

# ଭାବଗୁଚ୍ଛ

କବି
ନରେନ୍ଦ୍ର ନାଥ ଦାଶ



୨୦୦୭ରେ ମୁଖମନ୍ତ୍ରୀଙ୍କ କରକମଳରେ
"ଜଣା ଅଜଣା ଟ୍ରାଫିକ୍" ପୁସ୍ତକର ଲୋକାର୍ପଣ

ଭାବଗୁଚ୍ଛ

ପ୍ରଥମ ପ୍ରକାଶ - ୨୦୧୬

କବି :
ନରେନ୍ଦ୍ର ନାଥ ଦାଶ
ଦଣ୍ଡତୋଟା, ପୁରୀ
ମୋ.- ୯୮୬୧୦୧୧୧୬୦

ପ୍ରକାଶିକା :
ଦେବସ୍ମିତା ମିଶ୍ର

ଅକ୍ଷର ସଜ୍ଜା :
ପଙ୍କଜ ରାୟ
ଭାରତୀ ସାହୁ
୯୮୬୧୦୩୭୭୭୮

ମୁଦ୍ରଣ :
ଜେ.ଆର୍. ଗ୍ରାଫିକ୍ସ
ଝାରପଡ଼ା, ଭୁବନେଶ୍ୱର-୬



ମୂଲ୍ୟ - ଟ.୮୦/- (ଅଶି ଟଙ୍କା)



# କବିଙ୍କ କଲମରୁ

ପିଲାଦିନରୁ ଓଡ଼ିଆ ଭାଷା ପ୍ରତି ଶ୍ରଦ୍ଧା ଥିଲା । ହାଇସ୍କୁଲରେ ଅତିରିକ୍ତ ବିଷୟ ସଂସ୍କୃତ (Optional) ଥିଲା । ପିଲାଦିନରୁ ଭାଗବତ ଓ ରାମାୟଣ ପାଠ କରୁଥିଲି । ପଢ଼ିବା ସମୟରେ ଓ ପରେ ଅନେକ ଓଡ଼ିଆ ଉପନ୍ୟାସ, ଗଳ୍ପ, ନାଟକ ଓ ଗ୍ରନ୍ଥାବଳୀ ମଧ୍ୟ ପଢୁଥିଲି । ଆରକ୍ଷୀ ବିଭାଗରେ ନିଯୁକ୍ତି ପାଇବା ପରେ ଓଡ଼ିଆ ଭାଷାରେ ଲେଖାଲେଖି କରିପାରିନଥିଲେ ମଧ୍ୟ ବହୁ ଓଡ଼ିଆ, ଇଂରାଜୀ ଓ ହିନ୍ଦୀ ପୁସ୍ତକ ସମୟ ପାଇଲେ ପଢୁଥିଲି । ମୋର ୰ ପିତା ବଂଶୀଧର ଦାଶ "ମାତୃଭୂମି" "ଗଣତନ୍ତ୍ର" ପତ୍ରିକା ଓ "ଜ୍ଞାନମଣ୍ଡଳ"ରେ କାମ କରୁଥିବାରୁ ଔପନ୍ୟାସିକ, ବିଶିଷ୍ଟ କଥାକାର ୰ ସୁରେନ୍ଦ୍ର ମହାନ୍ତି ଏବଂ ଶିଶୁ ସାହିତ୍ୟିକ ତଥା ଜ୍ଞାନମଣ୍ଡଳ ପ୍ରଣେତା ୰ ବିନୋଦ କାନୁନ୍‌ଗୋ ପ୍ରମୁଖଙ୍କ ନିକଟରୁ ନିକଟତର ହୋଇଥିବାର ସୁଯୋଗ ମିଳିଥିଲା ଏବଂ ସ୍ୱନାମଧନ୍ୟ ଗୀତିକାର ୰ ଶିବବ୍ରତ ଦାସଙ୍କ ପାଖରେ ଆରକ୍ଷୀ ବିଭାଗରେ କର୍ମମୟ ଜୀବନ ଆରମ୍ଭ କରିଥିଲି ।

ଆମର ପରିବାରରେ ସାହିତ୍ୟାନୁରାଗୀ ବହୁତ । ୰ ପିତାଙ୍କ ବ୍ୟତିତ ଅନୁଜ ଶ୍ରୀ ଦେବେନ୍ଦ୍ର ନାଥ ଦାଶ ଅଧ୍ୟୟନ ସମୟରେ କଲେଜରୁ ସାହିତ୍ୟରେ ସମ୍ମାନ ପାଇବା ପରେ ସେହି କ୍ଷେତ୍ରରେ ଆଦର ବଢ଼ିଲା ଓ ବର୍ତ୍ତମାନ ସୁଦ୍ଧା କିଛି ପୁସ୍ତକ ପ୍ରକାଶ କରି ସାରିଛନ୍ତି । ସେ ବର୍ତ୍ତମାନ ଏକ ଓଡ଼ିଆ ଦୈନିକ ପତ୍ରିକା ଏବଂ ଏକ ସାହିତ୍ୟ ପତ୍ରିକାର ପ୍ରତିଷ୍ଠିତ ସମ୍ପାଦକ । ମୋର ଜଣେ ଦଦେଇ ପୁଅ ଭାଇ ଶ୍ରୀ ଗଗନେନ୍ଦ୍ର ନାଥ ଦାଶ ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଥିବାବେଳେ ଅଧ୍ୟାପକ ଶ୍ରୀ ବିଷ୍ଣୁମୋହନ, ଶ୍ରୀ ବିଜୟ କୁମାର ଦାଶ, ଶ୍ରୀ ଅମୂଲ୍ୟ କୁମାର ଦାଶ ଓ ତାଙ୍କ

ପତ୍ନୀ ଡଃ ଉର୍ମିବାଳା ଆଚାର୍ଯ୍ୟ ମଧ୍ୟ ଓଡ଼ିଆ ସାହିତ୍ୟ ଜଗତରେ ନିଜର ସ୍ଥିତି ସୁଦୃଢ଼ କରିଛନ୍ତି ।

ଚାକିରି କ୍ଷେତ୍ରରେ ଜଣେ ସୁଦକ୍ଷ ରାଇଫଲ ଏବଂ ସର୍ବଭାରତୀୟ ପୁଲିସ୍ ରିଭଲଭର ପ୍ରତିଯୋଗିତାରେ ଭାଗ ନେଇ ନିଜକୁ ପ୍ରତିଷ୍ଠା କରିବା ସହ ଟ୍ରାଫିକ୍ ବିଶାରଦ ଭାବେ ମଧ୍ୟ ପ୍ରତିଷ୍ଠିତ କରାଇ ପାରିଛି ।

ଓଡ଼ିଆ ସାହିତ୍ୟରେ ପ୍ରବେଶକୁ ଗଭୀରତାର ସହ ବିଚାରକୁ ନେଇ ନିଜକୁ ପଛରେ ହେଲେ ମଧ୍ୟ ଆଗେଇବାର ମନୋବୃତ୍ତିକୁ ସାର ପିଢ଼ିଆ ଦେଇ ଏହି କବିତା ସଂକଳନ "ଭାବଗୁଚ୍ଛ"କୁ ପ୍ରକାଶ କରୁଛି । ଏହି କବିତା ସଂକଳନକୁ ପ୍ରକାଶ କରିବା ପାଇଁ ପତ୍ନୀ ଶ୍ରୀମତୀ ପ୍ରମୋଦିନୀ ଦାଶ ଓ ପୁତ୍ର ଶ୍ରୀ ବିଭୂଦତ୍ତ ଦାଶ ଅବିରତ ପ୍ରେରଣା ଦେଇଥିବାରୁ ଶ୍ରମ ସାର୍ଥକ ହୋଇଛି । ଆପଣଙ୍କ ସ୍ନେହ ଶ୍ରଦ୍ଧା ପାଇଲେ ନିଜକୁ କୃତାର୍ଥ ମନେ କରିବି ।

ଜୀବନର ପ୍ରଥମ କବିତା ପୁସ୍ତକ ହୋଇଥିବାରୁ ଭୁଲ ରହିଥିଲେ ମହାନୁଭବତା ଗୁଣରେ କ୍ଷମା କରିବେ ।

*ନରେନ୍ଦ୍ର ନାଥ ଦାଶ*

# ସମର୍ପଣ

ଓଡ଼ିଶା ଆରକ୍ଷୀ ବିଭାଗରେ କର୍ମମୟ ଜୀବନର ଆରମ୍ଭ । ସେହି ଗୁରୁଦାୟୀତ୍ୱର ଗୁରୁ ଓଡ଼ିଶାର ସ୍ୱନାମଧନ୍ୟ ଗୀତିକାର ସ୍ୱର୍ଗତ ଶିବବ୍ରତ ଦାସଙ୍କୁ ମୋର ପ୍ରଥମ ଅର୍ଘ୍ୟ କବିତା ପୁସ୍ତକକୁ ବିନମ୍ରତାର ସହ ସମର୍ପଣ କରୁଛି ।

ବିଶେଷ କୃତଜ୍ଞତା ଜଣାଉଛି ଗୀତିକାର ଶ୍ରୀ ରବି ମହାପାତ୍ରଙ୍କୁ ଯେ ମୋତେ ସାହିତ୍ୟ ଜଗତରେ ଆଜି ପର୍ଯ୍ୟନ୍ତ ପ୍ରେରଣା ପ୍ରଦାନ କରୁଛନ୍ତି ।



# ଅଭିମତ

'କବିତା' କବିମନର ସକଳ ଆବେଗର ପରିପ୍ରକାଶ । କବି ଯାହା ମୁହଁରେ କହିପାରନ୍ତି ନାହିଁ କାଗଜ କଲମରେ ତାକୁ ସୁନ୍ଦର ଭାବରେ ଫୁଟାଇ ପାରନ୍ତି ତାଙ୍କ ହୃଦୟର ସକଳ ଅଭିବ୍ୟକ୍ତିକୁ । କବିର ଆବେଗ ଭାବନା, କଳ୍ପନା ସବୁ ପର୍ବତରେ ନିର୍ଗତ ଝରଣା ପରି କୁଳୁ କୁଳୁ ନାଦରେ ବହିଯାଏ । ଭିନ୍ନ ଭିନ୍ନ ପଥରେ । ସେହିଭଳି କିଛି ଅନୁଭୂତି କିଛି କଳ୍ପନା ଓ କିଛି ସ୍ୱତଃସ୍ଫୁତ ଆବେଗକୁ ନେଇ କବି ନରେନ୍ଦ୍ର ନାଥ ଦାଶଙ୍କର କଳ୍ପନା ଓ ଭାବନା ରାଜ୍ୟରୁ ଝରି ଆସିଥିବା ନିର୍ଝରର ଭିନ୍ନ ଭିନ୍ନ ଧାରାକୁ ଏକାଠି କରି ସଜେଇଛନ୍ତି ପ୍ରକାଶିକା "ଭାବଗୁଚ୍ଛ" କବିତା ସଂକଳନରେ । କବି ଭାବନାର ଫଳଶ୍ରୁତି କବିତା ପୁସ୍ତକଟିରେ ପ୍ରକାଶିତ । କେତେବେଳେ କବି ପ୍ରକୃତିର ଶୋଭାକୁ ବର୍ଣ୍ଣନା କରିଛନ୍ତି ଓ ତାର ଭିତରେ ଏକ ଅନ୍ତର୍ନିହିତ ଭାବନା, ଯାହା କି ସୃଷ୍ଟି ପାଇଁ ମଙ୍ଗଳମୟ । ଅନେକ ଗୀତି କବିତାର ସମ୍ଭାରରେ ଲକ୍ଷ୍ୟ କରି ହୁଏ କବିଙ୍କର କେବଳ କବି ଦୃଷ୍ଟି ନୁହେଁ ସଂଗୀତକାରର ଅନ୍ତରଟିଏ ମଧ୍ୟ ରହିଛି । କେଉଁଠି କେଉଁଠି କବି ବ୍ୟଙ୍ଗ ବିଦ୍ରୂପ ମାଧ୍ୟମରେ ସଂସାରରୁ ଅନ୍ୟାୟ ଅତ୍ୟାଚାରର ସକଳ ଦୁଷ୍କର୍ମକୁ ବିନାଶ କରିବାର ପ୍ରୟାସ କରିଛନ୍ତି । କବି ଶ୍ରୀ ଦାଶଙ୍କର ପେଷା ଥିଲା ପୋଲିସ୍ ବିଭାଗ ଅର୍ଥାତ୍ ସମାଜରେ ବିଶୃଙ୍ଖଳା ଦୂର କରି ଶୃଙ୍ଖଳିତ କରିବାର କର୍ମ । ବର୍ତ୍ତମାନ କବି ପୋଲିସ୍ ଲାଠି ନୁହେଁ କବି ହାତର କଲମ ମୁନରେ ସମାଜରେ ଶାନ୍ତି ଶୃଙ୍ଖଳା ରକ୍ଷାର ପ୍ରୟାସ କରିଛନ୍ତି । କବିଙ୍କ ହୃଦୟ କନ୍ଦରରୁ ଭିନ୍ନ ଭିନ୍ନ ଭାବଧାରାରେ ପ୍ରବାହିତ ଏହି କବିତାଗୁଡ଼ିକ ପୁସ୍ତକ ଆକାରରେ ପାଠକ ନିକଟରେ ପହଞ୍ଚିପାରିଛି ଆନନ୍ଦର କଥା । କବିଙ୍କର ଏହି ସାଧୁ ପ୍ରୟାସ ଅଭିନନ୍ଦନୀୟ ।

*ଡକ୍ଟର ବିଷ୍ଣୁପ୍ରିୟା ଓତା*
*ପ୍ରଫେସର ଓଡ଼ିଆ ବିଭାଗ*
*ଉତ୍କଳ ବିଶ୍ୱବିଦ୍ୟାଳୟ*

# ସୂଚୀପତ୍ର

## ବ୍ୟଙ୍ଗ ପୋଖରୀ

# ହେ ନୀଳ କନ୍ଦର ସାଇଁ

ହେ ନିଳ କନ୍ଦର ସାଇଁ
ଏ ଜୀବନ ଯାଉ ତୁମରି ସେବାରେ
ବସିଅଛି ପଥ ଚାହିଁ
ଟାଳି ଦେବ ନାହିଁ ଏ ମିନତିକୁ ମୋର
ଆନ କିଛି ମାଗୁ ନାହିଁ ॥

ଦାସିଆ କାମନା ପୂରଣ କରିଲ ହାତରୁ ନଡ଼ିଆ ନେଇ
ଧନ୍ୟ କରିଲ ହେ ମାଣୀକକୁ ପ୍ରଭୁ ଖାଇ ତାର ବସା ଦହି
ଭକ୍ତକୁ ତୁମର ଅମର କରିଲ ଗଣେଶ ବେଶକୁ ହୋଇ
ଏ ପାପୀ ମନକୁ ଧୋଇ ଦିଅ ପ୍ରଭୁ
ବୁହାଇ ଭକତି ଭାବର ନଈ
ବିଘ୍ନ ବିନାଶନ ପାଇଁ ବୁହାଇ ଦିଅ ହେ ମୋ ମନ ବନରେ
ଭକତି ଭାବର ନଈ ॥

ଗଜ ଉଦ୍ଧରିଲ ମହାବିପତ୍ତିରୁ ଢାଳି ତୁମ କୃପାବାରୀ
କାଳ କାଳ ପାଇଁ ବନ୍ଧୁ ମହାନ୍ତିଙ୍କୁ ରଖିଦେଲ ବନ୍ଧୁ କରି
ଏତିକି ମାଗୁଣି ତୁମରି ଚରଣେ ରହିଥିବ ହୋଇ ଛାଇ
ହାତ ଯୋଡ଼ି ଥିବି ମୋ ଜୀବନ ଯିବ ତୁମ ନାମ ଗାଇ ଗାଇ ॥



# ଅବତାରୀବାବା

ଆଶା ଭରଷାର ମହାସାଗର
ଶିରିଡ଼ି ବାବାଙ୍କ ପାଦେ ଜୁହାର
ଅନାଥର ନାଥ କୃପା ଅପାର
ଦୁଃଖ ଜଣାଇଲେ ମିଳେ ନିସ୍ତାର ॥

ଜାତି ଧର୍ମ ନାହିଁ ବାବାଙ୍କ ପାଖେ
ସୁଖ ଦୁଃଖର (ସେ) ଖବର ରଖେ
ତା ପାଦରେ ଯିଏ ନିଏ ଶରଣ
ଶୟନେ ସ୍ୱପନେ ମିଳେ ଦର୍ଶନ ॥

ରୋଗୀ ଭୋଗୀ ପୁଣି ଯେତେକ ଜନ
ଆପଣେଇ ନେଲେ ନୂଆ ଜୀବନ
ପବିତ୍ର ଅଟେ ସେ ଶିରିଡ଼ି କ୍ଷେତ୍ର
ବାବାଙ୍କର ଲୀଳା ଅତି ବିଚିତ୍ର
ସେ ରୂପ ଦେଖିଲେ ଲାଗେ ସୁନ୍ଦର
ଅଶେଷ ମହିମା ସେ ନିମ ଗଛର
ଓଁ ସାଇରାମ ମୁଖେ ଉଚାରି
ଭକ୍ତ ଚାଲୁଥାଏ ନଚାହିଁ ଫେରି ॥



# ମାଗୁଛି କୈବଲ୍ୟ ଟିକେ

ହେ ପରଂବ୍ରହ୍ମ
କାଳିଆ ସାଆନ୍ତ
ପ୍ରଭୁ ଜଗନ୍ନାଥ
ତୋତେ ମାଗୁନାହିଁ କିଛି
ଶରଧା ବାଲିରୁ ମାଗୁନାହିଁ କିଛି
କୈବଲ୍ୟ ଟିକେ ମାଗୁଛି

ଭକତମାନଙ୍କ ଗହଳି ଚହଳି
ହାତ ଟେକୁଛନ୍ତି କେତେ
ନସର ପସର ଭକତ ଦେବତା
ଜୀବନ ସାର୍ଥକ ହିତେ
ପାପରୁ ମୁକତି ଆଶା ରଖିଛନ୍ତି
କରୁଣା କରିବ ଟିକେ

ନବ କଳେବର ଦିବ୍ୟ ଦରଶନ
ଦେଖିବାକୁ ମନ ରଥେ
ଉଣା କରିବନି ଦେବାକୁ ଦର୍ଶନ
ଭାଇ ଓ ଭଉଣୀ ସାଥେ
ଛପନ ଭୋଗରେ ଲୋଭନାହିଁ ମୋର
ମାଗୁଛି କୈବଲ୍ୟ ଟିକେ
ହେ ପରଂବ୍ରହ୍ମ
କାଳିଆ ସାଆନ୍ତ
ପ୍ରଭୁ ଜଗନ୍ନାଥ
ମାଗୁଛି କୈବଲ୍ୟ ଟିକେ ।।



# କେତେବେଳେ କେଉଁନାମ ସୁମରିବ

କେତେବେଳେ କେଉଁନାମ ସୁମରିବ
ଯେତେ ଯା ଅଶୁଭ ହେବ ଖଣ୍ଡନ
ବଖାଣିଲି ଯାହା ମନରେ ଗୁଣିବ
ସୁଧୀଜନ ଏହା କରି ଚୟନ ॥

ଚକ୍ରଧରବୋଲି ହେଜିବ ସମରେ
ସଙ୍କଟରେ ଡାକ ମଧୁସୂଦନ
ଅନଳେ ଚିନ୍ତିବ ଜଳଶାୟୀ ନାମ
ଗିରିରେ ଡାକିବ ରଘୁନନ୍ଦନ
ବାସଘରେ ଥାଇ ଭଜ ତ୍ରିବିକ୍ରମ
ଭ୍ରମଣରେ ଜପ ନାମ ବାମନ ॥

ଯେତେ ଯା ଅଶୁଭ ହେବ ଖଣ୍ଡନ
କେତେବେଳେ କେଉଁ ନାମ ସୁମରିବ
ଔଷଧ ସେବନେ ବିଷ୍ଣୁନାମ ସାର
ଭୋଜନରେ ଡାକ ଶ୍ରୀଜନାର୍ଦ୍ଦନ
ଜନଗହଳିରେ ଡାକିବ ବରାହ
ନରସିଂହ ନାମ କାନନେ ଜାଣ
ଦୁଃସ୍ୱପ୍ନ ଦେଖିଲେ ଚିନ୍ତିବ ଗୋବିନ୍ଦ
ସକଳ କରମେ ମାଧବ ନାମ ॥
କେତେବେଳେ × × × × × ? ?

ସାଥୀମେଳେ ଜପ ଶ୍ରୀଧରଙ୍କ ନାମ
ଅନ୍ତିମରେ ଭଜ ଶ୍ରୀ ନାରାୟଣ
ଏକଥାକୁ କେବେ ପାଶୋରି ଯିବନି
କରିବନି କେବେ ହେୟ ଜ୍ଞାନ
ସକଳ କଲୁଷ ହୋଇଯିବ ନାଶ
ଏହା ଅଟେ ଗୁରୁଦେବ ବଚନ ॥
କେତେବେଳେ କେଉଁ ନାମ ସୁମରିବ
ଯେତେ ଯା ଅଶୁଭ ହେବ ଖଣ୍ଡନ ॥





# ସଖୀ କି କରିବେ ପର

ବଇଁଶୀ ସ୍ୱନରେ କେଉଁ ରସ ଅଛି
ଗୋପୀ ହେଲେ ମସଗୁଲ ॥
ଯମୁନାର ପାଣି ନାଚି ଯାଉଥିଲା
ଶୁଣି ବଇଁଶିର ସୁର ॥

ରାଧିକା ସୁନ୍ଦରୀ କାନ ଡେରି ଥାଏ
ବଇଁଶୀର ଡାକ ପାଇଁ ॥
ଯେତେବେଳେ କାହ୍ନା ବଇଁଶୀ ବାଇଲେ
ରାଧା ଯାଉଥିଲେ ଧାଇଁ ॥

ନଟଖଟ ଆମ କଳା କହ୍ନେଇ ଲୋ
ନବରଙ୍ଗ ତାର ଖେଳ ॥
ତା ଖେଳରେ ରାଧା ମାତି ରହୁଥିଲେ
କରି ଦେଇ ସଖୀ ପର ॥



# କୁଣ୍ଠା କରିବ ନାହିଁ

ପ୍ରଭୁହେ ନୀଳ କନ୍ଦର ସାଇଁ
ଦେଖିବାକୁ ମନ ନବକଳେବର
କରୁଣା କରିବ ଶିରିକ୍ଷେତ୍ରରେ ଥାଇ
କୁଣ୍ଠା କରିବ ନାହିଁ ॥ (ଘୋଷା)

ଗଉଡୁଣୀ ହାତୁ ଦହି ଖାଇ ଦେଇ
ରତନ ମୁଦିକୁ ଦେଲ ବଢେଇ
ଜୀବନକୁ ତାର ଧନ୍ୟ କରିଦେଇ
ଚାଲିଗଲ କାଞ୍ଚି ବିଜୟ ପାଇଁ
କୁଣ୍ଠା କରିଲ ନାହିଁ
ପ୍ରଭୁହେ ନୀଳ କନ୍ଦର ସାଇଁ ॥

ଭକତ ଦାସିଆ ଭକତି ଭାବରେ
ନଡ଼ିଆକୁ ନେଲ ହାତ ବଢାଇ
ଭକତିରେ ମୋର କେଉଁ ଭାବ ଊଣା
କରୁଣା ଟିକିଏ ମିଳିଲା ନାହିଁ
କୁଣ୍ଠା କରୁଛ କାହିଁ
ପ୍ରଭୁହେ ନୀଳକନ୍ଦର ସାଇଁ ॥

ଭକତ ଡାକିଲେ ମନପ୍ରାଣ ଦେଇ
ଶୁଣୁଥାଅ ରତ୍ନବେଦିରେ ଥାଇ
ଭଲବୁଦ୍ଧି ଦିଅ ସେହି ପାପୀ ଜନେ
ଜଗତେ ପାପର ବିନାଶ ପାଇଁ
ପ୍ରଭୁ ହେ ନୀଳକନ୍ଦର ସାଇଁ ॥

ଦେବତା ଯାତନା ହରିବାକୁ ଯାଇ
ବୃନ୍ଦାକୁ କପଟେ କଲ ଅସତୀ
ଜୀବନଟା ଯାକ ଯାତନା ଭୋଗୁଛି
ଦରଶନ ଟିକେ ପାଇବା ପାଇଁ
କୁଣ୍ଠା କରିବ କାହିଁ
ପ୍ରଭୁ ହେ ନୀଳ କନ୍ଦର ସାଇଁ ॥

ନବକଳେବର ରଥରେ ଦର୍ଶନ
ଭାଇ ଓ ଭଉଣୀ ସାଥେ
ରଥକୁ ଆସିବ ଛେଚି ଛାଚି ହୋଇ
ଭକତ ମଙ୍ଗଳ ହିତେ
କୁଣ୍ଠା କରିବ ନାହିଁ
ପ୍ରଭୁହେ ନୀଳ କନ୍ଦର ସାଇଁ ॥





# ମୁକ୍ତି ପଥ

ଓଁ ଶିରିଡ଼ି ସାଇ ନମୋ ନମଃ
ତୁମେ ହରି ହର କୃଷ୍ଣ ରାମ
ଶିରିଡ଼ିବାବା କରୁଣା କର
ଦରଶନ ମିଳୁ ବାରବାର
ଶିରିଡ଼ି ଧାମରେ ଲାଗିଛି ଧାଡ଼ି
ଭକତ ଧାଉଁଛି ସଂସାର ଛାଡ଼ି ।।
ଗୋଲାପ ଫୁଲରେ ବାବାଙ୍କ ମନ
ଅରପିଲେ ମିଳେ ଆଶିଷ ଦାନ ।।
ମୁକତିର ପଥ ଭକତ ଖୋଜେ
ସେ ପାଇଁ ତ ବାବା ନାମକୁ ଭଜେ ।।
ତା ପାଦରେ ଯିଏ ଶରଣ ନିଏ
ମୁକତିର ପଥ ଦେଖାଇ ଦିଏ ।।





# ଶ୍ରୀ ଜଗନ୍ନାଥ

ନୀଳ କନ୍ଦରରେ ଶ୍ରୀ ଜଗନ୍ନାଥ
ଚନ୍ଦନ ଚର୍ଚ୍ଚିତ ଶୋଭା ମଣ୍ଡିତ
ନୀଳାଚଳେ ନୀଳ ଚକ୍ରର ମାନ
ଫର ଫର ଉଡେ ପାପ ନାଶନ
ଦେଖିବାକୁ ଥିଲେ ନୀଳ ଚକ୍ରକୁ
ଯିବ ବନ୍ଧୁଥରେ ଶିରିକ୍ଷେତ୍ରକୁ
ପୁରସ୍ତମ ଧାମେ ଚକା ଆଖିଆ
ଭକତକୁ ଡାକେ ପାଖକୁ ଆ
ପତିତଜନକୁ ଉଦ୍ଧାର ପାଇଁ
ବିଜେ କରିଛନ୍ତି ଜଗତ ସାଇଁ
ଭକତ ଭାବର ନୀଳାଚଳିଆ
କୋଠ ଭୋଗଖିଆ ହାତୀମୁଣ୍ଡିଆ
ପାଦ ଧୁଏ ତାର ଦରିଆ ଜଳ
ତା ପାଖରେ ନାହିଁ ପର ଅପର
ଷୋଳକଳାର ସେ ନନ୍ଦର ବଳା
ପାଖେ ବଡଭାଇ ଧବଳ ଧଳା
ହଳଦି ମୁହିଁଟି ତାର ଭଉଣୀ
ଲକ୍ଷ୍ମୀ ଠାକୁରାଣୀ ତାଙ୍କ ଘରଣୀ
ନୀଳାଚଳ ଧାମେ କରଇ ଲୀଳା
ଗୋପପୁରର ସେ କହ୍ନେଇ କଳା ।।



# ଦେବ ଭୂମୀ

କିଏ ସେହି ନମସ୍ୟ ଜଣକ
ନଭଶ୍ଚୁମ୍ବୀ ପର୍ବତ ମାଳାରେ
ବରଫାବୃତ ପରିବେଶେ
ସ୍ଥାପନ କଲେ ବଦ୍ରି ନାରାୟଣ
ମହାନ ଲକ୍ଷ୍ୟ ଜଗତ କଲ୍ୟାଣ
ତୁଷାର ମଣ୍ଡିତ ହିମାଳୟ ଗିରି
ସୁରମ୍ୟ  ପରିବେଶ ପ୍ରକୃତିର ଶିରି
ପାଦଦେଶେ ଅଳକା ନନ୍ଦା ପ୍ରବାହିତ
ମାନବ କଲ୍ୟାଣ ପାଇଁ ପ୍ରବାହିତ ବାରି ।
ଉତ୍‌ଫୁଲ୍ଲିତ ମନେ ଭକ୍ତ ଆତଯାତ
ସେ ମାଟିରେ ପାଦଦେଲେ ଜୀବନ ସାର୍ଥକ
ପବିତ୍ର ପୁଣ୍ୟ ଧାମେ ପାପ ହୁଏ ଅନ୍ତ ॥
ଦେବଲୋକୁ ଶିବ ଓ ପାର୍ବତୀ  ଆସିଥିଲେ ଧାଇଁ
ଏକାନ୍ତରେ କିଛି ଦିନ କଟାଇବା ପାଇଁ
ରହିଗଲେ ବହୁଦିନ ମାତାଙ୍କ ସାଙ୍ଗରେ
ଦେବଲୋକେ ବ୍ରହ୍ମା ଥିଲେ ଅଜ୍ଞାତରେ ॥
ଶିବ ଶୂନ୍ୟ ଦେବଲୋକ ବ୍ରହ୍ମା ଆଗୋଚର
ଆଦେଶ ନାରଦଙ୍କୁ ଡାକ ସତ୍ୱର
ବ୍ରହ୍ମାଙ୍କ ବାରତା ଯେବେ ଶୁଣିଲେ
ପ୍ରତ୍ୟାଗମନ କଥା ଶିବ ବିଚାରିଲେ
ବଦ୍ରି ନାରାୟଣ ବିଖ୍ୟାତ (ସେହି ଦିନୁ) ସାରା ଜଗତରେ
ଚାରିଧାମ ମଧ୍ୟେ ଏକ ବଦ୍ରିଧାମ ପିଠ
ପ୍ରତିଷ୍ଠା କରିଛନ୍ତି ବାବା ଭୋଳାନାଥ ।



# ନୀଳ ଆକାଶର ତଳେ

ନୀଳ ଆକାଶର ତଳେ
ନୀଳ ଦରିଆର କୂଳେ
ନୀଳାଚଳ ଧାମେ ତୁହିରେ କାଳିଆ
ଖେଳା କରୁଅଛୁ
କଳିକାଳେ ॥୦॥

ନୀଳାଚଳ ଧାମେ ବସିଥାଉ
ରତନବେଦୀରେ ଶୋଭାପାଉ
ଗରବଗଞ୍ଜନ ବାନା ଉଡାଉଛୁ
ତୋ ବଡ଼ଦେଉଳ
ମଥା ପରେ ॥୧॥

ବାରମାସେ କରୁ ତେରଯାତ
ଟାଣିଆଣୁ ଧରି ତୋ ଭକତ
ଆମେ ନୀଳମଣି ମୋ ହୃଦୟମଣି
ଦେଖିବାକୁ ତୋତେ
ମନ ଝୁରେ ॥୨॥



# ଘୁଁ ଘୁଁ

ରଥ ଚାଲୁଥିଲା ଘୁଁ
ଚକ ଗଡୁଥିଲା ଘୁଁ
ଭକତ ମେଳରେ ଡାକ ଶୁଭୁଥିଲା
ମନର ଠାକୁର ତୁ
ଜଗନ୍ନାଥ ହେ ଭାବର ଦେବତା ତୁ ।।

ଜୀବନ ମୁକତି ପାଇଁ
ହାତେ ମାଗୁଥିଲେ ଧାୟୀ
ପୁରୁଣା ସେ ଭାବ ହେଲାକି କାଳିଆ
ମାନବ ଲୀଳାରେ ତୁ
ବ୍ରହ୍ମାଣ୍ଡ ସାଇଁ ଦାରୁ ଗୋସେଇଁ ତ ତୁ ।।

ଭାଇଭଉଣୀଙ୍କୁ ନେଇ
ଦାଣ୍ଡ ଦୁଲୁକାଇ ଦେଇ
ରଥରେ ଆସିବୁ ଭକତେ ଦର୍ଶନ ପାଇଁ
ରଥ ଗଡୁଥିବ ଚକ ଗଡୁଥିବ
ଶୁଭୁ ବା ନ ଶୁଭୁ ଘୁଁ
ଜଗତ ସାଇଁ ଭକତ ଠାକୁର ତୁ ।।

ଘୋଷ ଯାତରାକୁ ହୁଁ
ଭଜନ କିର୍ତ୍ତନେ ହୁଁ
ଶରଧା ବାଲିରେ ତାହା ଚାଲୁଥାଉ
ଜଗତ ଉଦ୍ଧାର ହେଉ
ଜଗତ ହିତରେ ତୋ ରଥ ଯାତ ଏଇମିତି ଚାଲିଥାଉ ।।
ମନର ଠାକୁର ତୁ



# ଜଗନ୍ନାଥ ହେ ! ସବୁ ତ ଦେଇଛ ମୋତେ

ଜଗନ୍ନାଥ ହେ ! ସବୁତ ଦେଇଛ ମୋତେ
ତୋ ଅଭଡ଼ା ଭାତ ମୁଠେ ଦେବା ପାଇଁ
ତୋ ଦୁଆରେ ହାତପାତେ ॥୦॥

ସାରା ଜଗତର ଭକତ ଗହଳି
ଦିନୁଦିନ ଯାଏ ସୀମା ଆରପାରି
ଦିନଠାରୁ ରାତି ବେଳ ସାରୁ ନିତି
ଦରଶନ ଦେଇ କେତେ ॥୧॥

କୋଟି ଜନ ଆଶ ଦେଖିବାକୁ ତୋର
ନବକଳେବର ହେଲେ ତୁ ବାହାର
କରୁଣାକର ହେ କରୁଣା କରିବୁ
ସବୁ ମନେଆଶା ଯେତେ ॥୨॥

ତୋ ଭକତ ଯେତେ ଫେରିବେ ଭୟରେ
ଅଘଟଣ ଟିକେ ନହେଉ କାହାରେ
ଏ ଆଶିଷ ପାଇଁ ମାଗୁଛି ତୋ ପଦେ
ଢାଳିଦେବୁ ସବୁ ହିତେ ॥୩॥

# ମା' ମାଟିର ମମତା

ଭାଷା ନାହିଁ ବର୍ଣ୍ଣିବାକୁ ଗାଥା
କଳନା ବହୁ ଦୂରର କଥା
ତାହା ତ ମା ମାଟିର ମମତା
ସହନ ଶକ୍ତିର ଏ ବାରତା ।

ଜୀବ ଜଗତକୁ ଦେଉଅଛି ଦାନା
ଭେଦ ଭାବ ନାହିଁ ସହେ ଯାତନା
ଫୁଲ ଫଳ ଦେଇ ଜୀବନ ରଖୁଛି
କିଏ ହେବ ତାର ତୁଳନା ।

ପଦାଘାତ କରି ଚାଲନ୍ତି ସଭିଏଁ
ସହିଥାଏ ଘର୍ଷଣ ବେଦନା
କର୍ଷଣ କରନ୍ତି ହଳ ଗଇଁତିରେ
ଖୋଳିଚାଲେ ଯନ୍ତ୍ର କିଛି ମାନେନା ॥

ମା ନୀରବ ଅସହ୍ୟ ସହନ ଶକ୍ତି
କରେ ନାହିଁ କାହାର କ୍ଷତି
ଭାବିବା ଦୂରର କଥା
ଅବିରତେ ବାଣ୍ଟୁଛି ମମତା
ସେହିତ ମା ମାଟିର ମମତା ।



# ପାଠ ଯା' ପଢ଼ିଲି ପାରିବା ପଣରେ

ପାଠ ଯା' ପଢ଼ିଲି ପାରିବା ପଣରେ
କେତେ ବିତ୍ତ ଅରଜିଲି
ଚତୁରପଣ ମୋ ଅଧା ଜାଣିଥିଲି
ସେ ପାଇଁ ତ ହାରିଗଲି ॥୦॥

ଯାହା ପାଇଁ ଯେତେ ଭଲ ମୁଁ କରିଲି
ଭଲ ବୋଲି ସିଏ କହିଲାନି
ସମାଜର ଯେତେ ଝଡ କି ବତାସ
ସହିବା ଯେ ମୋର ସରିଲାନି
ତଥାପି କେତେ ମୁଁ ନିନ୍ଦା ଅପବାଦ
ସହିସହି ଜଳିଗଲି ॥୧॥

ଯାହା ହିତ ପାଇଁ ପଥ ଖୋଜି ଦିନେ
ସପନ ଦେଖିଲି କେତେ
ସପନକୁ ଯେବେ ସାକାର କରିଲି
ଦେଲା ଅପନିନ୍ଦା ସେତେ
ଅରଜିଛି ଯେତେ ଅପଯଶ ଖାଲି,
ଅନୁତାପେ ଯାଏ ଜଳି ॥୨॥



# ସ୍ୱାର୍ଥ

ନିଶାର୍ଦ୍ଧ ରାତିରେ ଘନ ଅନ୍ଧକାରେ
କିଏ ତୁମେ ଡାକୁଅଛ
ଯୌବନର ସାୟାହ୍ନରେ ମୋ ପାଖେ କି କାମ
ସବୁତ ତୁମେ ନେଇଛ ॥
ଦକ୍ଷିଣ ମୁହାଁ ଘରତ ମୋହର
କରିନି କାହାକୁ ପର
ଆଜିର ବେଳାରେ ସବୁ ଛାଡି ଦେଇ
ଚାଲିଗଲେ ବହୁଦୂର
ଜୀବନ ଲାଳସା ଅର୍ଥର ପ୍ରଭାବେ
ଯୁବାବେଳେ ବଳିଆନ
ସ୍ୱାର୍ଥର ପୁରାଣେ ଅର୍ଥ ଅନାଟନେ
ଫିକାପଡିଯାଏ ମନ
ସଂସାର ପ୍ରକୃତି ବିକଶିତ ନୀତି
ଅଜଣା ନୁହେଁ କାହାକୁ
ତଥାପି ମଣିଷ ବାଟବଣା ହୋଇ
ଭୁଲେନାହିଁ ତାର ସ୍ୱାର୍ଥକୁ
ନିଶାର୍ଦ୍ଧ ରାତିରେ ଘନ ଅନ୍ଧକାରେ
କିଏ ତୁମେ ଡାକୁଅଛ....



# କୁହୁଡ଼ିର ପରଶରେ

ହାଡ ଥରେ ପ୍ରବଳ ଶୀତରେ
ହାଡ ଥରେ ଘୋର ବରଷାରେ
ସାଗର ବକ୍ଷ ବରଫ ହୁଏ
ରାସ୍ତାଘାଟ ଲୁଚେ କୁହୁଡି ପରଦାରେ
ହାଡ ଥରେ ପ୍ରବଳ ଶୀତରେ ।

ଶୀତୁଆ କାକର ସକାଳେ
କୁହୁଡିଆ ପରଦାରେ
ସୂର୍ଯ୍ୟ ଦିଶେ ଝାପସା ଝାପସା
ନୀରବତା ଭାଙ୍ଗିଯାଏ ଅକୁହା କଥାରେ
ରାସ୍ତାଘାଟ ଲୁଚେ କୁହୁଡି ପରଦାରେ ।

ରାତିରେ ଚନ୍ଦ୍ରମଲ୍ଲୀ ହସେ
ଚନ୍ଦ୍ର ଜୋଛନାରେ ମନ ଉଲ୍ଲସେ
ପ୍ରିୟା ମୋର ଘୁରେ ଭାବନା ଆକାଶେ ।
ଥରି ଥରି ଶୀତୁଆ ପବନରେ
ଡାକୁଥିଲି କେତେ ସରାଗରେ
ଦିନ ଗଲା ରାତି ହେଲା ସରିଗଲା ବେଳ
ପାଗଳ ପରାଏ ବୁଲୁଥିଲି ମୁହିଁ
ପ୍ରିୟାମୋର ଲୁଚିଗଲା କୁହୁଡିର ପରଶରେ ।



# ପ୍ରେମ ଭାବ

ଗୋଲାପୀ ଅଧରେ ମୁରୁକି ହସଟି
ସତେ ଅବା ମହୁ ଝରୁଛି
ମୃଗନୟନୀତ ମନ ମୋହି ନିଏ
ସରମରେ ଭାଙ୍ଗି ପଡିଛି ।
ଲକ୍ଷ୍ମୀ ପାଦ ପରି ପୟର ଯୁଗଳ
ସାଧବାଣୀ ପରି ଚାଲୁଛି
ରୁଣୁ ଝୁଣୁ ଶୁଭେ ଘୁଂଗୁର ଶବଦ
ଘରର ଅଗଣା ହସୁଛି ।
ସପନ ନୁହେଁ ମୋ ଜୀବନର ସତ୍ୟ
ପ୍ରେମ ଶିକ୍ଷାରୁ ଅନୁଭବ
ବେଳ ସରିଗଲା ଭାବୁ ଭାବୁ ମନେ
ଅଧୁରା ସେ ପ୍ରେମର ଭାବ ।



❑❑

# କୁହ ଗୁଣିଜନ

ଉତ୍ପତ୍ତିର ସ୍ଥଳ କୁହ ଗୁଣି ଜନ
ବିଲୟର କାଳ କୁହ
ସଂସାର ଭିତରେ ଘର କରିଅଛୁ
ଦୁଃଖ ସୁଖ ଭାବକୁହ ।

ରୋଗର କାରଣ କୁହ ସାଧୁଜନ
ବେଦନାର ଦରକୁହ
ମାଆର ମମତା ବୁଝେ କେଉଁ ପ୍ରାଣୀ
ବେଦନାର ଦରକୁହ ।

ଜଳର ପ୍ରବାହ କୁହ ବଳିଆର
କବିର ଭାବନା କୁହ
କଳ୍ପନା ଲେଖାର ପେଡ଼ି ପସରାରେ
ଚେତନାର ଦର କୁହ ।

ସାହିତ୍ୟ ସାଧନା ଲେଖନୀ ଶକ୍ତିର
ପ୍ରତି ବାଦୀ କିଏ କୁହ
ନିଜ ଇଛା ମତେ ବୋହୁଛି ପବନ
ପ୍ରକୃତି ଚିତ୍ରଟି କୁହ ।



# ଟିକେ ଥାଉ ଲୟ

ପୁରୁଷଙ୍କ ସଙ୍ଗେ ଆମେ ସମାନ
ନାରୀବୋଲି କଣ ନାହିଁ ସ୍ୱାଭିମାନ
ବୃଷ୍ଟିବିନା ସୃଜି ହୁଏନା କୁଳିଶ
ନାରୀ ବିନା ସମାଜର ସର୍ବନାଶ
ଆମେ ଶିକ୍ଷିତ ଆମେ ସ୍ୱାଧୀନ
ଆମରି ଶକ୍ତିରେ ଦେଶ ମହାନ ॥

କରନାହିଁ ବୃଥା ଆସ୍ଫାଳନ
ବିନା ସୂର୍ଯ୍ୟେ ଚନ୍ଦ୍ର ହୁଏନି ଦର୍ଶନ
ସ୍ରଷ୍ଟା ସୃଷ୍ଟି ନାରୀ ଓ ପୁରୁଷ
ସର୍ଜିବାକୁ ସୃଷ୍ଟି ନୁହେଁ ସର୍ବନାଶ
ନାରୀ ଓ ପୁରୁଷ ସ୍ୱତନ୍ତ୍ର ଗଠନ
କାର୍ଯ୍ୟ ମଧ୍ୟ ଭିନ୍ନ ବିଧିର ବିଧାନ
ଶିକ୍ଷାର ଅବମାନନା ଆଇନ ଅପଚୟ
ଅତି ହେଲେ ଇତି ହେବ ଟିକେ ଥାଉ ଭୟ ॥





# "ରାତି ଅଧରେ"

କାଲି ରାତି ଅଧରେ
ଅମାବାସ୍ୟା ଘୋର ଅନ୍ଧକାରେ
ସ୍ୱପ୍ନ ଦେଖିଲି ଅବଚେତନରେ
କଥା ହେଉଥିଲି ଆଖିରେ
ସଲ୍ଲଜ ବଦନେ ଚାହୁଁଥିଲା ତଳକୁ
ପୁଣି ମୋ ମୁହଁକୁ ॥
ଦେଖା ହୋଇଥିଲା ରେଭେନ୍‌ସାରେ
ଗାର୍ଲସ କମନ ରୁମ୍ ବାରଣ୍ଡାରେ
ଛୁଟି ଦିନେ ଗୌରିଶଙ୍କର ପାର୍କରେ
ଆଉ କାଠଯୋଡି କୂଳରେ
କେତେ ରୋମାନ୍‌ସ କେତେ କଥା
ଭାବିଥିଲେ ହେବ ନାହିଁ ବୃଥା ॥
ସମୟ ଚକ୍ରରେ ତୁମେ ଗଲ ଦୂରେଇ
ମୋ ହୃଦୟରୁ କେବେ ଦେଇନି ଆଡ଼େଇ
ଜୀବନ ରଖିଛି ସହି ବହୁ ଧକ୍କା
ମରିନି ମୋ ପ୍ରେମ ଏବେ ଦେଲ ଦେଖା
ଆସ ମିଶିଯିବା ଗୋଟିଏ ମନ୍ଦିରେ
ଦୃଢକର ମନ ହଟିବାନି ॥
ସବୁ ପ୍ରତିକୂଳ ପରିସ୍ଥିତିରେ
ଭାଙ୍ଗିଗଲା ନିଦ ଘଡ଼ଘଡ଼ି ଶବଦରେ
ଘରଟି ନିଶୂନ କେହି ନଥିଲେ ପାଖରେ ॥



# ସଂସାର ମାୟା

ସଂସାର ବନ୍ଧନ ନୁହେଁ ଆପଣାର
ମାଟିଘଟ ଯିବ ଛାଡି
ସଭିଙ୍କ ଜୀବନେ ସେଦିନ ଆସିବ
ଧନ ରତ୍ନ ଯିବେ ଛାଡି ॥
ପରିବାର ମୋହେ ଗଢିଥିଲି ଘର
ଏବେ ସେ କହୁଛି ଯାଆ
ଶ୍ମଶାନ ଭୂଇଁକୁ ଲାଗୁଥିଲା ଡର
ଏବେ ସେ କହୁଛି ଆ ॥
ବଗିଚା କରିଲି ଲୁହ ଲହୁ ଢାଳି
ହେଲି ମୁଁ ତାହାର ମାଳି
ଖତ ସାର ଦେଇ ଯତନ କରିଲି
ଶାଖା ପ୍ରଶାଖା ଗଲା ମେଲି ॥
ଆପଣା ରକତ କଳୁଷିତ ହେଲେ
ଖତ ସାର ଦେବା ବୃଥା
ମାଳିର ଯତନ ଧରମ ତାହାର
ଭୁଲେ ନାହିଁ ସ୍ନେହ ଶ୍ରଦ୍ଧା ॥
ଜୀବନ ଯାତ୍ରାର ଅଭିନୟ ସବୁ
ପାଣିଚିଆ ହୋଇଗଲା
ବଗିଚାଟି ମୋର ଆଶରା ଦେଲାନି
ଝଡ ବତାସ ନେଇ ଗଲା ॥
ଆପଣା ରକତ କଳୁଷିତ ହେଲା
ବୋଲି ହେଲି ମୁହେଁ କାଳି
ମୋର ମୋର ବୋଲି ଯାହା ମଣୁଥିଲି
ସବୁ ସଂସାର କୁହେଳି ॥

❑❑

# ସ୍ମୃତି ସାନ୍ତ୍ୱନା

ସ୍ମୃତି ତୁମେ ହିମାଳୟଠାରୁ ବଡ଼
ପରିବ୍ୟାପ୍ତ ଅନନ୍ତ ଆକାଶ
ସାଗରର ଢେଉ ପରି ଆସି
ଫେରିଯାଅ ଅଥଳ ବକ୍ଷକୁ
ବାଲୁକା ତଟେ ନିଜ ମଥା ପିଟି ।

ଶୈଶବର ଧୂଳି ଖେଳ ହୃଦୟ ନିର୍ମଳ
ଥଟା ତାମସାର ରଙ୍ଗମଞ୍ଚେ
ହସି ହସି ଚାଲିଥାଏ
ରାଗ ରୋଷ ଯୁବା ବେଳ ଯାଏଁ ।

ବସନ୍ତ ପବନେ ଯୌବନ ପରଶ
ଉନ୍ମାଦନା ଜୀବନରେ ମଧୁଭରେ
ପ୍ରେମ ପିରତୀର ଲୁଚକାଳି ଖେଳ
କାହିଁ କେତେ ସପନ ଭାବନା
ନିମିଷକେ ଉଭା ହୋଇଥାଏ
ଥଳକୂଳ କେବେତ ମିଳେନା ।

ଯୁବାବେଳ ପୁଣି ଶୈଶବ କାହାଣୀ
ଭରିଦିଏ ମନରେ ମୂର୍ଚ୍ଛନା
ଅନୁଭବି ଜୀବନର ରୋମାଞ୍ଚ କାହାଣୀ
ପ୍ରୌଢ଼ ବେଳେ ଅବଶ ମନରେ ସାନ୍ତ୍ୱନା ।



# ସରମରେ ଫିକା ଦିଶେ

ଷୋଡ଼ଶୀ ବୟସୀ ସପନ ରୂପସୀ
ପେରେମରେ ଯେବେ ହସେ
ଚନ୍ଦ୍ର ଜୋଛନାରେ କାଶ ତଣ୍ଡୀ ଫୁଲ
ସରମରେ ଫିକା ଦିଶେ ॥

ପିରତି ସେନେହ ବୟସର ମନ
ପ୍ରେମ ନିକିତିରେ ହୁଏନା କଳି
କାମନା ବାସନା ବସନ୍ତ ପବନ
ଫିକା ପଡିଯାଏ ସରଗ ଦୋଳି ॥

ଲଜ୍ଜାନତ ମୁଖେ ଗୋଲାପି ଅଧର
ଶୋଭାପାଏ ଯେବେ ପ୍ରିୟା ଶରୀରେ
ଫିକା ଫିକା ଦିଶେ ଫଗୁଣର ରଙ୍ଗ
ଭାସେ ମୁଁ ସପନ ରାଇଜରେ ॥



# ରାଣ ଦେଉଛି

ସକାଳରୁ ସଞ୍ଜ ବକଧ୍ୟାନ ପରି
ଅନାଇଛି ତୁମ ବାଟକୁ
ଦେଖା ହୋଇନାହିଁ ଅନେକ ଦିନରୁ
ନିଦ ଆସୁ ନାହିଁ ଆଖିକୁ
ମୋ ଠାରୁ ସୁନ୍ଦରୀ ଆଉ କେଉଁ ଗୋରୀ
କିମିଆ କଲାକି ତୁମକୁ
ବୁକୁର ରକତ ପାଣି ଫାଟୁଅଛି
ସନିପାତ କରେ ଦେହକୁ
ସକାଳରୁ ସଞ୍ଜ .............
ବୁକୁ ତଳେ ତୁମ ପ୍ରୀତି ପସରାକୁ
ସରାଗେ ସାଇତି ରଖିଛି
କରିନାହିଁ କେବେ ପିରତୀରେ ଊଣା
ଗୋଲାପ ବଗିଚା ପରିଟି
ଫୁଲର ମହୁକୁ ସରାଗରେ ନେଇ
ରଖୁଥାଏ ଯେହ୍ନେ ମାଛି ଟି ।
ଅମାନିଆ ମନ ବୁଝି ପାରୁନାହିଁ
କଲାଣି ଏତିକି ସରିକି
ସକାଳରୁ ସଞ୍ଜ .............



ବସନ୍ତ ପବନ ବହିଲେ ଧରାରେ

ବୃକ୍ଷ ଦିଏ ପତ୍ରଝଡା

ତୁମର ହୃଦୟ ପ୍ରିତୀ ପସରାରେ

ମୁଁ କି ହେଲି ଏବେ ଅଲୋଡ଼ା

ସକାଳ ଧୂପରେ ସଞ୍ଜ ଆରତିରେ

ତୁମରି ପ୍ରୀତିକୁ ଢାଳୁଛି

ବେସୁରା କରନି ପ୍ରେମ ରାଗିଣୀକୁ

ତୁମକୁ ମୋ ରାଣ ଦେଉଛି ।





# ବିବରା ବିବେକ

ବିବରା ପ୍ରମିଳା ବିବେଚିତ ଯଦି
ବିବେକି ବିଜ୍ଞାନୀ ପାଖେ
ବିବାଦ ବିଷକୁ ବାଦ ଦେଲେ ଯାଇ
ବାନ୍ଧବୀ ବାନ୍ଧିବି ସୁଖେ
ବାମପାଖେ ରଖି ବରମାଳା ଦେଇ
ବରଣ କରିଲି ଯେବେ
ବାରଙ୍ଗନା ବୋଲି କାହିଁ ବିଚାରିବି
ବିଷମ ଜୀବନ ପଥେ ॥
ବିବରା ପ୍ରମିଳା .............. (ଘୋଷା)
ବିଚ୍ଛେଦ ବିମାନ ବିମାର୍ଗରେ ଗଲେ
ବୁକୁତଳ ର୍ଜଜରିତ
ବିବେକ ବନ୍ଧରେ ବାଡେଇଲେ ଯାଇଁ
ବିଘଟନ ପ୍ରଶମିତ
ବିଖଣ୍ଡିତ ବୁକୁ ବିଚଳିତ ଆଜି
ବିକମ୍ପିତ ବିକିରଣ
ବିକୃତ ବିକୋଷ ବିକ୍ରମରେ ଧାଏଁ
ବାହୁଡା ବାସନ୍ତ ବଣ ॥
ବିବରା ପ୍ରମିଳା .............. (ଘୋଷା)

# ଓଡ଼ିଆ ହେଉ ମହିୟାନ

ଓଡ଼ିଶା ପ୍ରସିଦ୍ଧ ପୁରୀଧାମ ପାଇଁ
ଜଗତରେ ଅଛି ନାଆଁ
ସଞ୍ଜୀବତୀ ଜାଳେ ଓଡ଼ିଆ ଘରଣୀ
ମୁଣ୍ଡରେ ଥାଏ ଓଢଣା ॥
ଘନ ବନାନୀର ଅଭାବତ ନାହିଁ
ସୁଜଳା ସୁଫଳା ଭୂଇଁ
ଖଣି ଖାଦାନରେ ଭରପୁର ଅଛି
ତୁଳନା କରିବା କାହିଁ ॥
ରାଜାମାନେ ଏଠି ରାଜ୍ କରୁଥିଲେ
ପ୍ରଜା ପାଉଥିଲେ ଦୁଃଖ
ଦୁଃଖ ହରିବାକୁ ବିଚାର ବିମର୍ଷ
ଓଡ଼ିଶା ବାହାରେ ଶାସକ ॥
ସ୍ୱାଭିମାନ କଥା ବୁଝିଲା ଓଡ଼ିଆ
ବରପୁତ୍ର ହେଲେ ଉଭା
ଓଡ଼ିଶା ରାଇଜ ସ୍ୱତନ୍ତ୍ରତା ପାଇ
ବିକଶିତ କଲା ପ୍ରଭା ॥
ଧନ୍ୟ ଜଗନ୍ନାଥ ଜଗତର ନାଥ
ଫର ଫର ଉଡେ ବାନା

ଓଡ଼ିଆ ଭାଷା ସ୍ୱତନ୍ତ୍ରତା ପାଇ

ମାନ୍ୟତାରେ ଏବେ ଗଣା ॥

ବନ୍ଦେ ଉତ୍କଳ ଜନନୀ ଜାଗ୍ରତ କରୁ

ଓଡ଼ିଶାବାସୀଙ୍କ ପ୍ରାଣ

ବୁଦ୍ଧି ବିବେକର ସତ୍ ଉପଯୋଗେ

ଓଡ଼ିଆ ହେଉ ମହିୟାନ ॥





# ଶୁନ୍‌ଶାନ୍ ଭିତରେ

ତା'ପାଦର ରୁଣୁଝୁଣୁ ଶବ୍ଦ
ହଜି ଯାଇଥିଲା ସେ ଦିନ
କାହା ପାଦର ଠକ୍ ଠକ୍ ଶବ୍ଦରେ ......
ସବୁ ଚୁପ୍ ଚାପ୍ ଶୁନ୍ ଶାନ୍ ଭିତରେ
'ମମତା'ର ଛଳଛଳ ଆଖି
ଖୋଜୁଥିଲା ତା'ଅଭାବୀ ମନଟା ପାଇଁ
କିଛି ସବୁଜ ସଂକେତ ......
ରାତି ପାହିଲେ ସବୁ ଓଲଟି ଯିବ
ତା'ପାଦର ଶବ୍ଦ / କିଛି ଫୁସ୍‌ଫୁସ୍ ଶବ୍ଦ / ସବୁଜ ସଂକେତ
ସବୁ ରହିଯିବ କୁହୁଡ଼ିରେ,
ନିଷ୍କ୍ରେସିତର ଲୁହର ବର୍ଷାରେ
ଧୋଇଯିବ ସବୁ ନାଟକର ସଂଳାପ
ସୁଗ୍ ଆଉ ସାକୀ ଏମିତି ଅନେକ ......
ପାଦରେ ନାଇଥିବା ଘୁଙ୍ଗୁର
କଣ୍ଟା ପାଲଟି ଯାଇଥିବ
ଗୋଲାପର ମଦମତ୍ତା ଆକର୍ଷଣ ଭିତରେ
ସ୍ଥାଣୁ ପାଲଟି ଯାଇଥିବ ତା ସର୍ବାଙ୍ଗ ଶରୀର
ହାତରେ ଝୁଲୁଥିବା ସୁନାର କଙ୍କଣ
ପାଲଟିବ ଲୁହର ବଳୟ
କଷଟି ପଥରେ କଷି କଷି ......
ଶୂନ୍‌ଶାନ୍ ଭିତରେ ।





# କାହିଁକି ଏ ଅଭିନୟ

ଯେବେ ବସନ୍ତ ପବନ ବହିଲା
ନହୁଲି ସୁମନ ଭଅଁରଟି ଚୁମ୍ବୀ
ପିରତି ଘାଇଲା କଲା
ଗଗନେ ଉଡିଲା ଜଳରେ ଭାସିଲା
ଧରାଦେଲା ନାହିଁ ହାତରେ
ପ୍ରେମର ବଣିକ ଜାଲ ବିଛାଇଲା
ପାଇବାକୁ ତାକୁ ସାଥିରେ
ମସଗୁଲ ଥିଲେ ପ୍ରେମୀ ଯୁଗଳଟି
ଚାଲୁଥିଲେ ଏକ ଲକ୍ଷ୍ୟରେ
ବସନ୍ତ ପବନ ସୁନେଲି ସପନ
ଶୀତଳ ଜୋଛନା ରାତିରେ
ପିରତି ଉଆସ ଆସିଲା
ଯେବେ ବସନ୍ତ ମଳୟ ବହିଲା ........... (ଘୋଷା)
ବୟସ ଋତୁର ଜୋଛନା ରାତିର
ପାଇଲେ ବସନ୍ତ ପରଶ
ପିରତି ମନକୁ ମଧୁମୟ କରେ
ବଢିଚାଲେ ଭାବ ବିଶ୍ୱାସ
ରାତି ସରିଯାଏ କଥା ରହିଯାଏ

ଅମାନିଆ ମନ ମାନେନା
ଲୋତକର ଧାର ବହି ଚାଲିଥାଏ
ବୁକୁର ଯାତନା ସରେନା
କାଚ ଝରକାର ଏ ପାଖରେ ମୁଁ
ସେ ପାଖରେ ତୁମେ
ଅନୁରୋଧ ମୋର କହିଯାଅ ବାରେ
କାହିଁକି ଏ ଅଭିନୟ ।

□□



# ପବିତ୍ର ସ୍ଥାନ

|| ୧ ||

ମନ ଚାହେଁ ଶାନ୍ତି ରହିବ ପବିତ୍ର ସ୍ଥାନରେ
ନିଜ ଘରେ ଅବା ବାହାରେ
ଅତି ପବିତ୍ର ସ୍ଥାନ ମନ୍ଦିର ପରିସର
ଭଜନ କୀର୍ତ୍ତନ ଯହିଁ ବିରାଜିତ ଠାକୁର
ଭକତର ଆତଯାତ ମାଗୁଣି ଦର୍ଶନ
ବିନାଶିତ ହୁଏ ପାପ କରୁଥିଲେ ଧ୍ୟାନ

|| ୨ ||

କୁହାଯାଏ ନ୍ୟାୟାଳୟ ପବିତ୍ର ସ୍ଥାନ
ଧର୍ମାବତାର ନିକିତି ଧରି ବିଦ୍ୟମାନ
ଉଭୟ ପକ୍ଷଙ୍କୁ ଶୁଣିବେ ରହି ମଉନ
ଦୋଷ ପାଇଁ ଦଣ୍ଡ ନ୍ୟାୟାଳୟ ବିଧାନ
ଧନୀ ଗରିବ ଅଧିକାରୀ ଅବା ରାଜନେତା
ସମସ୍ତେ ଏହି ନ୍ୟାୟ ବିଧାନରେ ବନ୍ଧା
ଗୀତାକୁ ଛୁଇଁ ଶପଥ କହିବେନି ମିଥ୍ୟା
ଦୋଷ ପାଇଁ ଦଣ୍ଡମିଳେ ନୁହେଁ ଅନ୍ୟଥା ||



॥ ୩ ॥

ସବୁଠୁ ପବିତ୍ର ଅଟେ ନିଜ ବାସସ୍ଥାନ
ଏନ୍ତୁଡ଼ିଶାଳରୁ ଆରମ୍ଭ ହୁଏ ଜୀବନ
ପିତାମାତା ଆଉ ଯେତେ ପରିଜନ
କହୁଥିବେ ଗଢିବାକୁ ଉତ୍ତମ ଜୀବନ
ମାନି ଚଲୁଥିଲେ ଘର ସରଗ ସମାନ

॥୪॥

ପବିତ୍ର ନୁହଁଇ କେହି ନିଜ ବାସପରି
ଚିରଦିନ ସୁଖଶାନ୍ତି ଯାଉଥାଏ ଝରି
ସବୁ ଶେଷ ହୋଇଯାଏ ଗଲେ ଆରପାରି
ଗଲାବେଳେ ଶୁଭୁଥିବ ଖାଲି ରାମନାମ
ତା ସାଥିରେ ମିଶିଥିବ କରୁଣ କ୍ରନ୍ଦନ

❑❑



# ନୀଳମଣି ନାଥ

ନୀଳ ଆକାଶର ତଳେ
ନୀଳ ଦରିଆର କୂଳେ
ନୀଳାଚଳ ଧାମେ ତୁହିରେ କାଳିଆ
ଖେଳା କରୁ ସବୁବେଳେ
ନୀଳାଦ୍ରି ବିହାର ଘୋଷ ଯାତ
ବାରବାର ଯିଏ ଆତଯାତ
ସିଏତ ଜଗତ ସାଇଁ ।
କଳା କହ୍ନେଇ ନୀଳମଣି ଗୋସେଇଁ ॥

ନୀଳ କନ୍ଦରର ବେଦି
ନୀଳମାଧବଙ୍କ ଜ୍ୟୋତି
ଭକତ ଦୁଃଖ ହରନ୍ତି
ପାପର ବିନାଶ ପାଇଁ
ନୀଳଚକ୍ରେ ବାନା ଉଡ଼ଇ
ଏଧରା ଧାମରେ ନୀଳାମ୍ବୁବକ୍ଷରେ
ନୀଳମଣି ନାଥ ଶ୍ରୀକ୍ଷେତ୍ରରେ
ସର୍ବ ଶୁଭ ନୀଳ ସଙ୍କେତ
ପୁରସ୍ତମ ଧାମ ମହତ
ନୀଳାଚଳେ ସର୍ବେ ସୁରକ୍ଷିତ ॥





# ମନର ମାନସୀ

ମନର ମାନସୀ ନହୁଲି ବୟସୀ
ସପନରେ ଯେବେ ଆସେ
ହେଲେ ହେଉ ପଛେ ଅମେଇସା ରାତି
ମୋ ଘରେ ଜୋଛନା ଦିଶେ ॥

ମନର ଭାବନା ବୁକୁର ଯାତନା
ସେଇ ଏକାପାରେ କଳି
କେତେ ଯେ ବାସନା କରେ ଆନମନା
ଦେଖି ସେଇ ନୀଳପରି
ଫଗୁଣର ବାଆ ବହିଯାଏ ସେଠି
ମନ୍ଦ ମଳୟ ବାସେ ॥

ଗଭାରେ ଗଜରା ପାଦରେ ଅଳତା
ଛମ୍ ଛମ୍ ଚାଲି ତାର
ଦୋହଲାଇ ଦିଏ ମରମ ତଳକୁ
ତା ନୟନର ଠାର
ସିଏ ଫେରିଗଲେ ରାତିଟିର ରଙ୍ଗ
ଫିକା ଫିକା ଭାରି ଦିଶେ ॥



# ଗ୍ରୀଷ୍ମ ମହାନ

ଅଗିତ ଜଳିଲା ଶୀତ ତ ଟଳିଲା
ଗ୍ରୀଷ୍ମ ଆସିବ ମାଡ଼ି
ପୃଥିବୀ ତାତିବ ଜଙ୍ଗଲ ଜଳିବ
ଜୀବଜନ୍ତୁ ଦେବେ ରଡ଼ି
ଗଡ଼ିଆ ପୋଖରୀ ଶୁଖିଲା ହୋଇବ
ପତର ପଡ଼ିବ ଝଡ଼ି
ନରେନ୍ଦ୍ରରେ ପ୍ରଭୁ ଚାପରେ ଖେଳିବେ
ରତ୍ନ ସିଂହାସନ ଛାଡ଼ି
ପିତାମାତା ସଙ୍ଗେ ପିଲାଏ ବୁଲିବେ
ଝୁମିବେ ନୂଆ ଜାଗାରେ
ପ୍ରକୃତି ସୌନ୍ଦର୍ଯ୍ୟ ଉପଭୋଗ କରି
ମନ ଦେବେ ପାଠ ପଢ଼ାରେ
ଦେବାଧିଦେବଙ୍କ ରଙ୍ଗିଲା ମନକୁ
ବିବାହ ପ୍ରସଙ୍ଗ ଘାରିଛି
ଶୀତଳ ଷଷ୍ଠୀରେ ଅଧିଷ୍ଠିତ ହେବ
ଗ୍ରୀଷ୍ମତାତି ବଢୁଛି
ବଟବୃକ୍ଷ ଧରା ପୃଷ୍ଠେ ବକୁଳର ଛାଇ
ତାତି କରେ ଉପଶମ
ସ୍ୱର୍ଣ୍ଣକୂପ ଜଳ ବଡ଼ ସୁଶୀତଳ
ପୂର୍ଣ୍ଣମୀ ତିଥିରେ ସ୍ନାନ

□□

# ନହୁଲୀବୟସୀ

ନହୁଲୀ ବୟସୀ ରୂପସୀ ଓଠରେ
ଫୁଟି ଉଠେ ଯେବେ ହସ
ଫିକା ପଡ଼ିଯାଏ ଜୋଛନା ଜୁଆର
ଷୋଡ଼ଶୀର ଚଉପାଶ ॥୦॥

ଦେବତା ହେଲେ ବି କଳି ପାରିବେନି
ତା'ବୁକୁତଳ ଭାବନା
ଦେଖିଦେଲେ ଥରେ ତାକୁ ପାଇବାକୁ
ବଢି ଯାଇଥାଏ କାମନା
ସେବେଳେ ଫଗୁଣ ଛାଡ଼ିଯାଏ ନାହିଁ
ମନେ କରିନିଏ ବସା ॥୧॥

ଗଭାର ଗଜରା ପାଦରେ ଅଳତା
ନାଲି ନାଲି ଓଠ ଧାର
ପଳାଶଫୁଲ ତ ସରି ହେବ ନାହିଁ
ଝାଉଁଳିବ ବାରବାର
ସେ ଫୁଲକୁ ଦେଖି ଭଅଁର ମନରେ
ବଢ଼ିଯାଏ କେତେ ଶୋଷ ॥୨॥







# ଅବୁଝା ମନ

ପୁରୁଣା କଥାକୁ କୁହ ନାହିଁ ଏବେ
ଯୁଗ ବଦଳିଛି ପରା
ଫିରିଙ୍ଗି ଦେଶର ବିଦେଶୀ ଭାଷାକୁ
କହ ଜୀବନଟା ସାରା ॥

ବାପା ବୋଉ ଏବେ ଡାଡି ମମି ହେଲେ
ନମସ୍କାର ହେଲା ମର୍ଣ୍ଣିଂ
ଚନ୍ଦନ ସିନ୍ଦୁର ଦରକାର ନାହିଁ
ସେ ସବୁ ପୁରୁଣା ଡ୍ରେସିଂ
ଧୋତି ଓ ଶାଢୀ ମେଲାଣୀ ନେଉଛି
ଫ୍ୟାନ୍‌ସି ପୋଷାକ ଜମିଙ୍ଗ୍ ॥

ଜିନ୍ ପ୍ୟାଣ୍ଟ ଟପ୍ ଚାଲୁଛି ଏ କାଳେ
ମୁକୁଳା ରହୁଛି ବେଣୀ ।
ଗୁରୁଭକ୍ତି ପ୍ରଥା ଉଭେଇ ଯାଉଛି
ଲାଜ ପଡିଲାଣି ବଳି
ପ୍ରେମ ବନ୍ୟା ଖାଲି ଦେଶେ ଆଗେଇଛି
ବୁଲନ୍ତି ଲଙ୍ଗୁଳି ରାଣୀ ॥

ଟୋକା କହୁଛନ୍ତି କରିବୁ ଚାକିରି
ସୁଖରେ କରିବୁ ଘର
ଆମ ସେବା ଆମେ ପ୍ରଥମେ କରିବୁ
ବାପା ମାଆଙ୍କ କଥା ପର ॥

ନାରୀ ଏ କୁହନ୍ତି ପୁରୁଷଙ୍କ ସଙ୍ଗେ
ଆମେତ ହେବୁ ସମାନ
ଘରକୋଣେ କିବା ଲୁଚି ରହିଥିବୁ
ମିଳିବ କାହିଁ ସମ୍ମାନ ॥

ନେତାଙ୍କ ଆଦର୍ଶ ଦେଶ ଭବିଷ୍ୟତ
ଯାହାଥିଲା ଅତୀତରେ
ତାହା ପୁଣି ଆଜି ସପନ ପାଲଟେ
ଜାଗ୍ରତ ନିଜ ସ୍ୱାର୍ଥରେ ॥

ପଛରି ବିଛରି କରିବା
ଥିଲା ପରିବାର ନୀତି
ଅବୁଝା ମନକୁ କେତେବୁଝାଇବ
ଉଭେଇଯାଏ ଶକତି ॥

❑❑

# ଡେରିକଲ କିଆଁ ଏତେ

ଶୀତ ସରିଗଲା ବସନ୍ତ ଆସିଲା
ତୁମ ବାଟ ଚାହିଁ ଚାହିଁ ॥
ମଳୟ ହାତରେ ଦେଲି ଯେ ବାରତା
ତୁମେ ପାଇଲ କି ନାହିଁ ?
କହିଥିଲ ସାଥି ମଧୁମାସ ହେଲେ
ବଧୂ କରିନେବ ମୋତେ ॥
ଏବେ ମଧୁକାଳ ଦେଉଛି ଯାତନା
ଡେରି କଲ କିଆଁ ଏତେ ॥
କେମିତି ଗୋ ସାଥି ମିଳନ ବେଳାରେ
ଦୂରରେ ରହିଲ ଯାଇ ॥
ମନର ଗୋପନ କଥାଟି ଗୋ ସାଥି
ପାରୁନି ଆଉ ଲୁଚାଇ ॥
ବସନ୍ତ ଆସିଲା ପତ୍ର କଅଁଳିଲା
ଗଛରେ ଗଛରେ କେତେ ॥
ଫଗୁଣର ଫଗୁ ରଙ୍ଗରେ ମାତିଲେ
ପିଲାରୁ ବୁଢା ସମସ୍ତେ ॥
ଫୁଟିଥିଲା କେତେ ଭାବର କଦମ୍ବ
ବୁକୁ ତଳ ଅଗଣାରେ ॥
ଏବେ ରାତି ଅଛି ସପନ ବି ଅଛି
ତୁମେ ନାହଁ ମୋ ପାଖରେ ॥

କେତେ କାଳ ମିତ ତୁମ୍ଭ ଅପେକ୍ଷାରେ
ରହିବି ପଥକୁ ଚାହିଁ ॥
ମନର ପରାଶ ମେଣ୍ଟିବ କେମିତି
ତୁମ୍ଭର ତ ଦେଖା ନାହିଁ ॥
ଆମ୍ଭ ବଉଳରେ ଫୁଲରେ ଫୁଲରେ
ଦେଖେ ମିଳନର ରାସ ॥
ସଭିଙ୍କ ସାଥିରେ ଆଖି ମିଳେ ସିନା
ମନେ ମରେ ମନତ୍ରାସ ॥





# ସୁନ୍ଦର

ମେଘକୁ ସୁନ୍ଦର ଘଡ଼ଘଡ଼ି ନାଦ
ଆକାଶକୁ ଜହ୍ନରାତି
ଯଶୋଦା ରାଣୀକୁ ସୁନ୍ଦର ଦିଶେ ଲୋ
କୃଷ୍ଣ ଥିଲେ ତାଙ୍କ କତି ॥
ଗାଁକୁ ସୁନ୍ଦର ଦେବତା ମନ୍ଦିର
ବାହାକୁ ସୁନ୍ଦର ବାଜା
ବଡ଼ ଦେଉଳ ସୁନ୍ଦର ଦିଶେଲୋ
ଉଡୁଥିଲେ ମୈତ୍ରୀ ଧ୍ୱଜା ॥
ବଡ଼ଦାଣ୍ଡେ ଦୁଇ ଭାଇ ଓ ଭଉଣୀ
ଆସୁଥିଲେ ହୋଇ ସାଥି
ସୁଭଦ୍ରା ରାଣୀକୁ ସୁନ୍ଦର ଦିଶେଲୋ
ଅର୍ଜ୍ଜୁନ ଥିଲେ ସାରଥି ॥
ଭକ୍ତଙ୍କୁ ସୁନ୍ଦର ନନ୍ଦିଘୋଷ ରଥ
କାଳିଆ କରିଲେ ବିଜେ
ବଳରାମ ଭାଇ ରହି ରହି ଆସେ
ବସି ରହି ତାଳଧ୍ୱଜେ ॥
ଗୋପପୁର ଦାଣ୍ଡ ସୁନ୍ଦର ଦିଶେଲୋ
କୃଷ୍ଣ ଥିଲେ ଗୋପୀମେଳେ
ଆହୁରି ସୁନ୍ଦର ତାଙ୍କ ଲୀଳାଖେଳା
ଭକତ ଖୋଜିଲା ବେଳେ ॥

□□

# ବେଶୀ କମ୍

ଭଲ ମନ୍ଦ କଥା ସମସ୍ତେ କହନ୍ତି
କିଏ ବେଶୀ କିଏ କମ୍
ପାଇବା ଆଶାରେ ଠାକୁର ପାଖରେ
ମାଗଣ ବେଶୀ ମାଗୁଣୀ କମ୍॥
ଠାକୁର ଭକତି ସମସ୍ତେ କରନ୍ତି
କାର୍ତ୍ତିକେ ବେଶୀ ଶ୍ରାବଣେ କମ୍
ଭୁଲ କାମ ପାଇଁ ଗାଳି ଦେଇଥାନ୍ତି
ମାଆଟି ବେଶୀ ବାପାଟି କମ୍॥
ଜନ୍ମ ମୃତ୍ୟୁ ହାର ଭାରତ ଭୂଖଣ୍ଡେ
ପୁଅଙ୍କ ବେଶୀ ଝିଅଙ୍କ କମ୍
ଲଜ୍ଜା ସରମର ପୋଷାକ ପିନ୍ଧନ୍ତି
ପୁରୁଷ ବେଶୀ ପ୍ରମିଳା କମ୍ ॥
ରାତିରେ ରାଜୁତି ଆକାଶରେ ଚନ୍ଦ
ଶୁକ୍ଳରେ ବେଶୀ କୃଷ୍ଣରେ କମ୍
ବେଶୀ ଓ କମ୍‌ର ପଶା ପାଲିଟିରେ
ପୂଣ୍ୟର ବେଶୀ ପାପର କମ୍॥



# ଲଳନା

କଞ୍ଚନା ଛକରେ ଲଳନା ବୁଲୁଛି
ହୋଇ ପାରୁନାହିଁ କଳନା
ଏ ପାଖ ସେ ପାଖ ଆଖି ବୁଲାଉଛି
ଯେହ୍ନେ କାଉ ଅବା ଶାଗୁଣା
ସମାଜରେ ଏବେ ସବୁ ଓଲଟା
ଲଳନା ଖୋଜୁଛି ଲଫଙ୍ଗା ଟୋକା ॥

କବିର ପ୍ରେରଣା ଥିଲା ସେ ଲଳନା
ଏବେ ଧନୀକର ଖେଳନା
ସୌଖୀନ ଗାଡ଼ିରେ ନିତି ଯାଏ ଆସେ
ହେଉ ଜଣା ଅବା ଅଜଣା
ବିୟୁଟି ପାର୍ଲର ମଜା ପାଇଅଛି
ତଥାପି ତା'ମନ ମାନେନା
ବୁକୁତଳ ଇଛା ପୂରଣ ପାଇଁକି
ବୁଲୁଅଛି ବାର ଅଗଣା ॥

ଦେଖାଇ ନିଜର ବଡ଼ିମା
ଚାଉମିନ୍, ରୋଲ୍ ଖାଏ ପ୍ରତିଦିନ
ସମାଜ ଗଠନ ଜାଣେନା
ଇଞ୍ଜିନିୟରିଂ ପାଠ ବାଇ କଲା ତାକୁ
ବୋପାକୁ ମିଳଇ ଯନ୍ତ୍ରଣା

ବାହାହୋଇ ଯଦି ଶାଶୁଘର ଯିବ
ଶିଖି ପାରିବକି ଶଣୁଣା
ଯୌବନ ଯାଇ ବୃଦ୍ଧାବସ୍ଥା ହେଲେ
ନିଶ୍ଚୟ ଭୋଗିବ ଯାତନା
ପ୍ରକୃତିର ନିତି ଅନ୍ୟଥା ନୁହଁଇ
ଭାବିତ ପାରୁନି ଲଳନା ।





# କବିଙ୍କ ସମ୍ମାନେ

କିଏ ଜାଣିଥିଲା ମୋହନ ପତି
ହୋଇବେ ଭିକାରୀ ରଥ,
ସାହିତ୍ୟ ସମୁଦ୍ରେ ପହଁରି ପହଁରି
ଚଳାଇବେ ବ୍ୟଙ୍ଗ ରଥ ।।
ବ୍ୟଙ୍ଗ ସାହିତ୍ୟକୁ ଆଦରି ନେଲେ ସେ
ଥଳ କୂଳ ତାର ନାହିଁ,
ମନ ଦମ୍ଭ କରି ଆଣ୍ଠି ଲେଖୁଛନ୍ତି
ଛୁଆ ବାପା ହୋଇ କାହିଁ ।।
ସାହିତ୍ୟ ମସଲା ଖାଇ ଛୁଆ ବାପା
ବଡ଼ ବୋପା ହୋଇଛନ୍ତି,
"ମନ୍ତ୍ରୀଙ୍କ ମୂଳା" ପଠାଇ ସଭାରେ
ବ୍ୟଙ୍ଗମଣି ସାଜିଛନ୍ତି ।
ରସିକ ଶେଖର ଭାରି ହେଣ୍ଟାଳିଆ
ସାଲିସ ନାହିଁ ଜାତକେ,
ଗୁଣ୍ଡିପାନ ଖାଇ ଲେଖା ଚାଲିଅଛି
ରହି ହଜାରିଆ କଟକେ ।।
ସମ୍ମାନ ତାଙ୍କର ପଛେ ଦଉଡୁଛି
କଲମ ହେଲା ସାର୍ଥକ,
"କାନ୍ତ" ସମ୍ମାନେ ପୁରସ୍କୃତ ହୋଇ
ରଖିଲେ ବ୍ୟଙ୍ଗର ଟେକ ।।



# କଳାଧନ

କୋଇଲାରେ ଯେବେ ଚାଲୁଥିଲା ରେଳ
ଦୁନିଆଟା ଥିଲା ଭଲ
କଳା ହେଉଥିଲା ଦେହ ଓ ପୋଷାକ
ଆଉ ଆମ ପରିମଳ
ସେ କୋଇଲା ଏବେ ହେଲା କଳାଧନ
ଭାବିତ ନଥିଲା ମନ ।।

ଓଲଟି ଯାଇଛି ଏ ଦୁନିଆ ଏବେ
ଚାରିଆଡେ କଳା ଧନ
ଭାରି ଲୋଭନୀୟ ଅନୀତି ଗଛଟି
ଲୋଭ କରେ ଦେଖି ମନ
ସଭିଏଁ ଚାହାଁନ୍ତି ନିଜ ପାଖେ ନେଇ
ରଖିବାକୁ ଚିରଦିନ ।।

କୋଇଲାକୁ ଦିନେ ଧରିବାକୁ ହାତେ
ନାକ ଟେକୁଥିଲେ ଯିଏ
ସେ କଳାଧନକୁ ଅନ୍ଧାରରେ ନେଇ
ସାଇତି ରଖୁଛି ସିଏ ।।

ସ୍ୱାଧୀନ ଦେଶର ନାଗରିକ ଆମେ
ସ୍ୱାଧୀନ ଆମର କାମ
ନିଜ ଦେଶ ଧନ ବୋହିନେବା ପାଇଁ
ଏବେ ତ ସବୁରି ମନ ।।



# ଦଶପଡୁଥିବ ଶନିବାରକୁ

ରାମ  ନାମ ସତ୍ୟ ହେ
ହରି  ନାମ ସତ୍ୟ ହେ
ଚିରନ୍ତନ ସତ୍ୟ ପ୍ରକୃତି ବକ୍ଷରେ
ଜନ୍ମମୃତ୍ୟୁ ସୁଖ ଦୁଃଖ
ଅଛି ଥିଲା ଆଉ ଥିବ
ସମସ୍ତେ ତାହାର ଗରାକ
ଏହା ନୁହେଁ  ନୂଆ ବା ଅଜଣା ॥

ଜନ୍ମ ପରେ ବାରଦିନ ମୃତ୍ୟୁପରେ ଦଶ
ବାରଣ ନୀତି ଓ ନିୟମ ପାଳନ୍ତିସମସ୍ତେ
ଅପୂଜା ରୁହନ୍ତି ଠାକୁର ବ୍ରାହ୍ମଣ ଅଭାବେ
ଅଶୌଚିଆ ଦୁର୍ବଳକର୍ମ ଭାରିକଷ୍ଟ ଦଶଦିନ
ବାରଣ ଯେଣୁ ଆମିଷ ଭୋଜନ
ଭାଇବନ୍ଧୁ ବିରାଦର ରହନ୍ତି ଦୂରରେ
ସମ୍ପର୍କ କେବଳଚିଠି ଓ ଫୋନରେ ॥

ମରଣ ଖବର ଯେବେ ସେ ପାଆନ୍ତି
ଆଃ ଓଃ କହିମୁଣ୍ଡଟିକୁ ଧୋଇ
ଅବା ପାଣିଛିଞ୍ଚି ହୋଇ
ବର୍ଜନ କରନ୍ତି ଆମିଷ ଭୋଜନ
କିନ୍ତୁ ଅନ୍ୟ କାମଚାଲେ ପ୍ରତିଦିନ

ନଥାଏ ସେଠି ଅଶୌଚ ବିଚାର
ଅଫିସ କାମ ସହ ବଣ ଭୋଜି ଚାଲେ
ରିତି ମତ ଚାଲେ କ୍ଲବ ପ୍ରୋଗ୍ରାମ
ହିସାବ ରଖନ୍ତି ଦଶଦିନକୁ ।।

ଶୁଦ୍ଧିପାଇଁ ଯିବେ ଦଶ ତୁଠକୁ
ଯମରାଜାଙ୍କୁ ବର୍ଷଣ ହୁଏ ଗାଳି
ମରଣ  ନିଶ୍ଚିତ ହେଲେ ଭାବିବନି
ଭାଇ ବିରାଦରଙ୍କ ଅସୁବିଧା
ପିଲାଙ୍କ ପରୀକ୍ଷା, ମାର୍ଚ୍ଚମାସ, ନୂଆବର୍ଷ
ପୁଣି ବିଧାନସଭା ଅଧିବେଶନ ଓ ନିର୍ବାଚନ
ରାସ୍ତାରୋକ ଧର୍ମଘଟ ନିଶ୍ଚେ କରିବୁ
ଇସ୍ତାହାର ଦେବୁ
ବିନତି ଯମରାଜାଙ୍କୁ କରିବେ ବିଚାର
ମାରିଲେ ମାରନ୍ତୁ ପ୍ରତିବାଦ ନାହିଁ
ତାହା ତ ଚିରନ୍ତନ ବିଧିର ବିଧାନ ।।

ବିଚାର କରିବେ ନିଶ୍ଚୟ
ନେବେନି କନ କନିଆ ଶୀତରେ
ବନ୍ୟା ବାତ୍ୟା ପରୀକ୍ଷା ବେଳେ
ନିର୍ବାଚନ ସମୟକୁ ନିଘା ରଖିଥିବେ
କ୍ୟାଲେଣ୍ଡର ଦେଖି ମାରିବ ତାହାଙ୍କୁ
ଯେବେ ଦଶ ପଡୁଥିବ ଶନିବାରକୁ ।।



# କବି ବେଦନା

କବି ମୁଁ ନୁହଁଇ ଅକବି ବି ନୁହେଁ
ସାହିତ୍ୟ ସାଧକ ଜଣେ
ସାହିତ୍ୟ ଆକାଶେ ଭସା ବାଦଲ ମୁଁ
ଜୁହାର ସାଧକ ଗଣେ ।
କଲମ ଧରିଛି ଦେବୀଙ୍କୁ ପୂଜିଛି
ପ୍ରତିଦିନ ନିରନ୍ତର
ଶବଦ ଗୋଟିଏ ଲେଖି ପାରୁ ନାହିଁ
ଆଶୀର୍ବାଦ ନାହିଁ ତାର ।

ନୀଳ ଆକାଶରେ ଭାସୁଛି ବାଦଲ
ବିନ୍ଦୁଏ ମେଘ ତ ନାହିଁ ।
ଧରଣୀ ବକ୍ଷରେ ବନ୍ୟା ହୋଇଥାନ୍ତା
ପୂବେଇ ପବନ କାହିଁ ?
ଭାବୁଛି ଏ ଅକବି କବି ପାଲଟିବ
ପାଇବ କବି ସମ୍ମାନ
ଗହଳି ଜମିବ ଘର ବାରଣ୍ଡାରେ
ବଢ଼ିବ ଗାଆଁର ମାନ ।

ନେତା ଜନତାଙ୍କ ଜମିଯିବ ଭିଡ
ବଢ଼ିବ ଖରଚ ମୋର
ସ୍ୱଚ୍ଛ ପାଣ୍ଠି ମୋ କମି କମି ଯିବ
ନ ପାଇ କାଗଜ ସାର ।

କବିଙ୍କ ଯନ୍ତ୍ରଣା କେହି ବୁଝନ୍ତିନି
କହୁଥାନ୍ତି ଦେବି ଦେବି
ଭଣ୍ଡୁଛନ୍ତି ଖାଲି ମିଥ୍ୟା କଥା କହି
ଧନ୍ୟ ତୁହି ବାକ୍ ଦେବୀ ।





# ତୁମର ସେଇଟି କିଏ ?

ଓଡିଶା ପ୍ରସିଦ୍ଧ ବାଲି ଯାତରା
ମହାନଦୀ ପଠାରେ ଚଳେ ଆଖଡା
ପ୍ରିୟା ମୋର ଥରେ କରିଲେ ମନ
ଯାତରା ଦେଖିବାକୁ ହେଲେ ଉଛନ୍ନ ।
ଭାଙ୍ଗି ପାରିଲିନି ସେ ନିବେଦନ
(ନିଶ୍ଚୟ) ପୂରଣ ହେବ ଓଜର ତାଙ୍କର
ବାହାରିଲୁ ବାଲି ଯାତରା ଖାଇବାକୁ ଠୁଙ୍କାପୁରୀ
ଚକ୍ରିରେ ଘୁରିଲୁ ସଉକି ପଡ଼ିଲା ଉତୁରି ।
ଦୋକାନ ଭିତରେ ଜମିଥିଲେ ଲୋକ
ଚଳି ଥିଲା ଠେଲା ପେଲା
ଯୋର ଯାର ମୂଳକ ତାର ରୀତିରେ
କଟକିଆ ଗାଇ ପଶି ଯାଉଛନ୍ତି
ଦେଖତ ତାଙ୍କ ଉଗୁରି
ପଶିଗଲା ଖାଇଗଲା ପଡୁଅଛି ହୁରି
ଦୋକାନ ଭିତର ଛିନ୍ନଛତ୍ର ହେଲା
ଗରାଖ ହେଲେ ଅଲଗା
ସୁନ୍ଦରୀ ଆମର ହଜିଲେ ସେଠାରେ
ହୋଇଥିଲୁ ଆମେ ଜଲକା
ଖୋଜି ଖୋଜି ମାଇକରେ ଡାକିଲି
"ମଣି ଆସଗୋ ଫେରି"

ସୁନ୍ଦରୀ ଆମର ମସ୍ଗୁଲ ଥାନ୍ତି
ନ ଶୁଣନ୍ତି କାନ ଡେରି
ଅଧଘଣ୍ଟା ପରେ ପହଞ୍ଚିଲେ ପାଖେ
ପାଦଟି ଥିଲା ଅସ୍ଥିର
ପ୍ରିୟତମା ମୁହଁ ଲାଲ୍ ପଡିଅଛି
ସାଙ୍ଗ କଲେ ନମସ୍କାର
ବାନ୍ଧବୀଙ୍କୁ ଛାଡି ତରବର ହୋଇ
ଖସିଲେ ଆମ ବନ୍ଧୁଏ
ଦୁଷ୍ଟାମୀ ଢଙ୍ଗରେ ପଚାରିଲୁ ଆମ୍ଭେ
"ତୁମର ସେଇଟି କିଏ"
ପ୍ରିୟାଟି ମୋର ନେତା ନ ହେଲେ ବି
ବୁଦ୍ଧି ଅଟଇ ପ୍ରଖର
ଘଟଣାକୁ ବୁଝି ଗେହ୍ଲେଇ କହିଲେ
ଚାଲ ଯିବା ଏବେ ଘର
ଭାବନାରେ ଭାସି ଯାଇ
ବାରମ୍ଵାର ଭାବୁ ଥିଲି
ମୁଁ କ'ଣ ପ୍ରିୟା ପାଶେ ହେଉଛି ଅସାର !

❑❑

# ଆସର ଆଶରା

ମୋର ପାଇଁ ସୁନ୍ଦର ସାରସ୍ୱତ ମଞ୍ଚ
ସାହିତ୍ୟ ଆଖଡା ପୀଠ,
ବାବାଜୀ ପାଇଁକି ସୁନ୍ଦର ଯେ ଭଳି
ଅରୁଆ ଭୋଜନ ମଠ ।
ଭଲ ଲାଗେ ମୋତେ ବରଷ ତମାମ
ସାହିତ୍ୟ ସଭା, ଆଖଡା,
ଶୃଗାଳ ପାଇଁକି ଲାଗଇ ଯେପରି
ମାଟି ତଳେ ପୋତା ମଡା ।
ଶୁଣୁ ଶୁଣୁ ଖାଲି ଭାଷଣ କବିତା
ମରିଯାଏ ସତେ ଭୋକ
ବଣ୍ଟନ ପୁଡିଆ ଗଣ୍ଡିଙ୍କୁ କରିଲେ
କଟଇ ଜଠର ଦୁଃଖ ।

ତାଳି ଗୋଟା କେତେ ମାରିଦେଲେ କିବା
ହାତଟା ଯାଉଛି ଛିଣ୍ଡି,
ମୋହର କିଅବା କ୍ଷତି ହୋଇଯିବ
ଅକବି ମାରିଲେ ହେଣ୍ଡି ।
ରାଜନେତା ପରି ମୁଣ୍ଡ ଗଣତିରେ
କର୍ମକର୍ତ୍ତା ଖୁସୀମନ,
ଭାବିବେ ଅନ୍ତତଃ ଯାତରା ଜମିଛି
ସୁସଫଳ ଆୟୋଜନ ।

ଫଟ ଉଠୁଥିଲେ ଜନତା ଦେଖିବେ
କେଉଁ ପରି ସମାବେଶ,
ସାହିତ୍ୟ ଉଠିବ ଭିଡିମୋଡି ହୋଇ
ଉଠିବ ଓଡ଼ିଶା ଦେଶ ।
ଯେଉଁ ଦିନ ଭଲ ଜଳଯୋଗ ଥାଏ
ଘରୁ ପଡଇ ବାହାରି,
ନିଜ ପିଲାପିଲି, ପଡିଶାଘରର
ଛୁଆ ପିଲାସାଥେ ଧରି ।
ମଉକା ପାଇଲେ ପ୍ୟାକେଟ୍‌କୁ ଦିଏ
ପକେଟ୍ ଭିତରେ ଭରି,
ଭଲଲୋକ ପରି ହାତ ବଢାଇଲେ
ନାହିଁ କରିବେ କିପରି ?
ବିନା ଭୋଜନରେ କି ସାହିତ୍ୟ ସେବା
ଦେଖିବା, ଶୁଣିବା ବଡ ।
ଯେଉଁ ଅନୁଷ୍ଠାନେ ବେଶି ପେଟ ପୂରେ
ସେହି ଅନୁଷ୍ଠାନ ବଡ ।

ଦାତାର ଇଶ୍ୱର ମଙ୍ଗଳ କରନ୍ତୁ
ସର୍ବେ ବୋଲ "ହରିବୋଲ"
ନ ହେଲେ କାହିଁକି ମୂଳା ଚୋବାଇବ
ଆମେ ପାଲଟିବୁ କାଲ ।



# ଘୃତ ମଣ୍ଡୁକ ସମାଚାର

ବୁଢାପାଖେ ବୁଢୀ ନ ବସିଲେ
ବୁଢାକୁ ଲାଗେନି ଭଲ
ବୁଢୀର ଅଭାବେ ରୂପସୀ ନିଶାରେ
ବୁଢା ହୁଏ କଲବଲ ॥
ପାକୁଆ ପାଟିରେ ଦାନ୍ତ ଗଜରିଛି
ଧଳାବାଳ ହୁଏ କଳା
ଚାଲିଲା ବେଳକୁ ଦେହ ଟଳମଳ
ମନଟା କିନ୍ତୁ ରଙ୍ଗିଲା ॥

ଯୋଗ ପ୍ରାଣାୟାମ କରନ୍ତି ପାର୍କରେ
ନାରୀ ମେଳେ ହସ ଖୁସି
କବିସୂର୍ଯ୍ୟ ଥିଲେ ନିଶ୍ଚେ ଭଣିଥାନ୍ତେ
ବୁଢା ଯୌବନକୁ କଷି ରୁପସୀ ॥

ହାତ ଥୁରୁ ଥୁରୁ ଚମ ଧୁଡୁ ଧୁଡୁ
ଉଡୁ ଅଛି ଖାଲି ହଂସା
ତଥାପି ବୁଢାର ମୋହ ତୁଟୁନାହିଁ
ଭାଙ୍ଗୁନି କାମିନୀ ନିଶା ॥
କଣ ସେ କରିବ କେତେ ବା ଭୋଗିବ
କୁକୁର ଜୀବନ ଦଶା
ଟେହି ଦେଇ ଲୋକେ ଦୁରେଇ ଯାଆନ୍ତି
ସମାଜରେ ଲୋକ ହସା ॥

❑❑

# ତ୍ରୟି ବଳୟ

ଏକ ଦୁଇ ତିନ୍
ତାକ୍ ଧିନା ଧିନ୍
ଶୁଭ ଅଶୁଭର ଟଣା ଓଟରାରେ
ତିନି ଟା ଖିନ ଭିନ୍
ବିଦ୍ୟାରମ୍ଭେ ତିନୋଟି ମଣ୍ଡଳ
ବ୍ରହ୍ମା ବିଷ୍ଣୁ ମହେଶ୍ୱର
ଗୁରୁଦେବ ପଢ଼ାଇଲେ ପାଠ
କହିଲେ ଏ ତିନି ଦେବତା ଶ୍ରେଷ୍ଠ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ବୋଲିକି
ରହିଅଛି ତିନି ପୁର
ତିନି ନେତ୍ର ଧାରି ପ୍ରଭୁ ମହାଦେବ
ଦେବତାଙ୍କ ମଧ୍ୟେ ସାର
ଦାରୁ ରୂପ ଧରି ତିନୋଟି ମୂରତି
ଜଗତେ ବିଖ୍ୟାତ ଶ୍ରୀ କ୍ଷେତ୍ର କିର୍ତ୍ତୀ
ଦୁଇ ଭାଇ ସଂଗେ ସୁଭଦ୍ରା ଭଉଣୀ
ତାଙ୍କ ପାଇଁ ପୁଣି ଖଞ୍ଜା ରଥ ତିନି
ତାକ୍ ଧିନା ଧିନ୍ ॥

ନାରୀଙ୍କର ଅଟେ ତିନିଗୋଟି ରୂପ
ଜାୟା ଭଗିନୀ ଓ ମା
ଶ୍ରୀ ଫଳର ଅଛି ତିନିଗୋଟି ଆଖି

ଭଲ କରି ତାକୁ ଚାହାଁ
ଶଂଖା ଶାଢୀ ମଥାରେ ସିନ୍ଦୁର
ପରିଚୟ ଅଟେ ଭାଗ୍ୟବତୀର
ତ୍ରି ଜଗତ ନ୍ୟୂନ ତିନି ପାଦତଳେ
ପ୍ରମାଣ ବାମନ ଅବତାର
ତିନିଗାର ପୁଣି ଡେଇଁବାରୁ ସତୀ
ଛଦ୍ମରେ ହରିଲା ରାବଣ ଯତି
ତିନୋଟି ତଲାକ ଉଚ୍ଚାରଣରେ
ପତ୍ନୀ ହୁଏ ପରିତ୍ୟକ୍ତା
ଛାଡପତ୍ର ତହିଁ ସମାହିତ ହୁଏ
କହେ ଯବନ ପ୍ରବକ୍ତା ॥
ପିତା ମାତା ଆଉ ଇଶ୍ୱରଙ୍କର
ପରି ତିନିର ପରିଚୟ
ଭଲ ମନ୍ଦ ଧରି ଗ୍ଭରି ପାଖେ
ଘେରା ତିନିର ମହାବଳୟ
ଶୁଭ ଅଶୁଭର ଟଣା ଓଟରାରେ
ତିନି ଟା ଖିନ ଭିନ୍
କିଏ କହେ ଭଲ କିଏ କହେ ମନ୍ଦ
ଯୁଗ ଯୁଗ ଧରି ଗ୍ଭଲିଛି ଦ୍ୱନ୍ଦ
ମିଳୁ ନାହିଁ ସମାପନ - ତାକ ଧିନା ଧିନ୍ ।

❑❑

# ମାନିନୀ

ହେଉ ପ୍ରମୋଦିନୀ ଅବା କୁମୁଦିନୀ
ସିଏ ମୋର ପ୍ରିତୀମାନିନୀ
ଜୋଛନା ରାତିର ଚନ୍ଦ୍ରମଲ୍ଲୀ ସମ
ଭାବରେ କରିଛି ବନ୍ଦିନୀ
ସିଏ ତ ମୋହର ପୁନେଇଁର ଚାନ୍ଦ
ହସତାର ଖିଲି ଖିଲି
ହୃଦୟର କଥା କହେ ସେ ଆଖିରେ
ଦେହ ତାର ମଖମଲି ॥
ଅଧରେ ତାହାର ଭରି ରହିଥାଏ
ମଧୁଭରା କଥା ଯେତେ
ତା ଗଳାର ସୁର ମନ କିଣିନିଏ
କୋକିଳର ରାବ ସତେ ॥
ଖାଇବାର ରୁଚି ସରଳ ଯେମିତି
ସାଜସଜା ତାର ସେମିତି
ଆଗଭର ହୋଇ କହେ ନାହିଁ କଥା
ମାପି ଚୁପି କହେ ସତେ ନିକିତି ॥
କଲେଜର ଶେଷ ସୋପାନ ଯାଏ ସେ
ପଢିଥିଲା ଦିନେ ପାଠ
ସେ ପାଇଁ ତ କେବେ କରିନି ଗରବ
କାମରେ କରେନି ମଠ
ମୋ' କଳପନା ଆଖିରେ ସିଏ ତ
ସପନର ଏକ ପରୀ
କେମିତି ତାହାକୁ ମୋ ଜୀବନରୁ
କେବେ ମୁଁ ପାରିବି ଭୁଲି ॥



# 'ମା'

ଜଗତ ଜନନୀ ଦୁର୍ଗା ମାଆ ମୋର
ଜୁହାର ତୋ' ପୟରେ
ଭଜନ ଜଣାଣ ଜଣାନାହିଁ ମୋତେ
କରୁଣା ଥାଉ ମୋ ଠାରେ ।
ଜିନ୍ ସଙ୍ଗେ ଟପ୍ ପିନ୍ଧି ତୁ ଆସିବୁ
ମୋବାଇଲ ହାତେ ଧରି
ପ୍ରଗତି ଯୁଗରେ ଦୂରଦର୍ଶନରେ
ହସ ଯାଉଥିବ ଝରି
ସ୍କୁଟିରେ ଚଢି ଆସିବୁ ମାଆଲୋ
ସିଂହ ବାହନକୁ ଛାଡି
ସଂରକ୍ଷଣ ସବୁ ବନ୍ୟଜନ୍ତୁ ଏଠି
ପିନ୍ଧିବୁ ଲୋ ହାତ କଡି
କଦଳୀ କମଳା ଲେଉଆ ଉଖୁଡା
ଭୋଗ ଲାଗିବନି ଆଉ
କୋଲେଷ୍ଟ୍ରଲ ଯଦି ରକ୍ତରେ ବଢିବ
ଦକ୍ଷିଣା ଦେବନି କେହୁ ।
ପୂଜା ମଣ୍ଡପର ଚରିପାଖେ ତୋର
ଗୁପ୍‌ଚୁପ୍ ଦହିବରା
କଟକୀ ଚାଟର ସୁଆଦ ଚାଖିଲେ
ଧରାକୁ ମଣିବୁ ସରା ।

ଦୁଇନେତ୍ର ତୋର ଯାହା ଦେଖୁଥିବ
ସତ ମଣିବୁନି ତାକୁ
ତ୍ରିନେତ୍ର ମଝିରେ ଦେଖିବୁ ନିରେଖି
ନଯାଇ କାହା ଘରକୁ ।
ଅଫିସ୍ ଭିତରେ ଥାନା ବାରଣ୍ଡାରେ
ଲୋକଗୁଡା ସାଲୁ ବାଲୁ
କୁଜି ବୁଲୁଛନ୍ତି ଧଇଁ ସଇଁ ହୋଇ
କରିବାକୁ କାଲୁ ବାଲୁ ।
ଯୁଗର ପ୍ରଭାବ ବଦଳିଛି ମାଆ
ବଦଳିଛି ରୀତିଗତି
ପୂଜାର ଧାରାକୁ ବଦଳାଇ ଆମେ
କରିବୁ ଦେଶ ପ୍ରଗତି ।
ଦଶ ଭୁଜ ତୋର ଢାଳି ଦେଉଥିଲା
ଧନ ରତ୍ନ ସ୍ନେହ ପ୍ରୀତି
ବିଜ୍ଞାନୀ ସମାଜ ବଦଳି ଯାଇଛି
ଖାଲି ଅନ୍ୟାୟ ଅନୀତି ।
ପଣତ କାନିରେ ସାହା ହେଉଥିଲୁ
ହୋଇ ତୁହି ଦଶ ଭୁଜା
ବିନତି ଏତିକି ତୋ ଠାରେ ମାଆଲୋ
ହୁଅ ଏବେ ଦୁଇଭୁଜା ।

❑❑

# ବୁଢ଼ାଗଲୁ

ପହିଲି ରଜରେ ବୁଢ଼ୀକୁ ନେଇ ମୁଁ
ବୁଲି ବାହାରିଲି ବଜାର
ସଡ଼କ ମଝିରେ ବଗୁଲିଆ ଟୋକା
କହିଦେଲା ନମସ୍କାର ।
ଆୟୁଷ୍ମାନ କହି ଆଗକୁ ଚାଲିଲି
ପଛକୁ ରହିଲା କାନ,
ଖତେଇ ହୋଇ କହିଲା ଟୋକାଟା
"ଦେଖ ତ ବୁଢ଼ାର ପ୍ରେମ ।"

ଟୋକା କଥା ଶୁଣି ବଢ଼ିଗଲା ବି.ପି. ।
ମଗଜ ହେଲା ଗରମ,
ବୁଢ଼ା ବୋଲି କ'ଣ କହୁଛୁ କହିଲି
ଦେଇ ଜାଣିନୁକି ସମ୍ମାନ
ଗଜରା ନିଶୁଆ ବଗୁଲିଆ ଟୋକା
ବନିଗଲା ସେଠି ବୋକା
ହାତ ଯୋଡ଼ି ଦେଇ ଭୁଲ ମାଗିଲା
ବୁଢ଼ୀ ପାଖେ ମୋର ମାନ ରହିଲା ॥



# ଲେଖନୀ ଲେଖିବ

ପ୍ରକୃତି ଉପାସନା ସୌନ୍ଦର୍ଯ୍ୟ ବର୍ଣ୍ଣନା
ଭଲ ଲାଗେ ମନ ମୋହେ
ଠିକ୍ ଥିଲେ କବିର ଲେଖନୀ ଚଳନା
କବିତା ବଢେନା ବିନା ସାହାରାରେ
ବଗିଚା ସୁନ୍ଦର ଲାଗେନା ବିନା ମାଳିରେ
କବିର କଳ୍ପନା ଥିଲା ସେ ଲଳନା
ଲେଖନୀରେ ସୌନ୍ଦର୍ଯ୍ୟ ବର୍ଣ୍ଣନା ॥

କଳା ଚଷମାରେ ନାଲିଆ ଛତା
ନାଲି ଅଳତାକୁ ଲାଲ କୁରୁତା
ଲଳନାକୁ ନେଇ ନୂଆ ଉନ୍ମାଦନା
ମାଓବାଦୀ ସଭ୍ୟା ଅବା ବାରାଙ୍ଗନା
ମାଇଣ୍ଡଟା ଯେବେ ବଦଳି ଗଲା
ପୁରୁଷ କବିଙ୍କ ମନ ଧର୍ଷିଲା
ରଙ୍ଗିଲା ମନକୁ ଭାବନାରେ ଧରି
ପଚାରିଦେଲେ ଆଗୋ ସୁନ୍ଦରୀ ॥

ଆମ ସଙ୍ଗେ ଟିକେ କଥା ହେବ କି ?
ଗୋରା ଦେହ ତାଙ୍କ ଲାଲ ପଡିଲା
ନାରୀ ସଶକ୍ତି କରଣ ରୂପ ଦିଶିଲା
ଲାଲ ପତାକା ହେଲା ଲାଲ ଓଢଣୀ
ସୁରକ୍ଷା ସମ୍ମାନ ଗଲେ ବଖାଣୀ

ଦୋଷ ମୋର ବୋଲି କଲେ ସାବ୍ୟସ୍ତ
ସେତିକିରେ ଲଳନା ହେଲେନି ଶାନ୍ତ
ଗଣ ମାଧ୍ୟମ ଓ ଆରକ୍ଷୀଙ୍କୁ ଖବର ଦେଲେ
ଲହଡି ପରାଏ ସବୁ ଧାଇଁ ଆସିଲେ ॥

କେଶ୍ ପହଞ୍ଚିଲା ନ୍ୟାୟାଳୟରେ
ସବୁ ଦେଖୁଥିଲି କବି ମନରେ
କଳା କୋଟ ବାବୁଙ୍କ ଲାଗିଲା ଗୋଳ
ମଢ ପାଖେ ଶାଗୁଣା ଯେହ୍ନେ ବିକଳ
ଗୁରୁ ଗମ୍ଭୀର କଣ୍ଠେ ଜଜ୍ କହିଲେ
ନିଜର ସଫେଇ କୁହ ଅକ୍ଷରେ
ହାତ ଯୋଡି କହିଲି "ହଜୁର ହଁ"
କବିର ଧର୍ମ ମୁଁ ପାଳନ କରୁଛି
ସୌନ୍ଦର୍ଯ୍ୟ ବର୍ଣ୍ଣନା କରୁଛି ଲେଖୁଛି
ଟିକେ କଥା ହେବା ପଚାରି ଅଛି ॥

ବାଚନିକ ଅଧିକାର ଯଦି ନାହିଁ କବିର
ଡେଏଟ ନଦେଇ ପଠାନ୍ତୁ କାରଗାର
ସମୟ ପାଇବି ସେଠି ରହିବି ଦୀର୍ଘଦିନ
ନାରୀ ସୌନ୍ଦର୍ଯ୍ୟ ଛାଡି ଲେଖିବି ବନ୍ଦିର ଜୀବନ" ॥

❑❑

# ଦେବଲୋକେ ଧର୍ମଘଟ

ଧରାଧାମେ  ଧର୍ମଘଟ ଆଇନ ସମ୍ମତ
ପଟୁଆର, କାମବନ୍ଦ, ରାସ୍ତାରୋକ ଅଂଶ ବିଶେଷ
ନିତି ପ୍ରତିଦିନର ସମ୍ବାଦ ଏବେ ପୁରୁଣା
ଆଜିର ଖବର ଅଜବ ନୂତନ ପ୍ରେରଣା
ଦେବଲୋକ ହୁଲସ୍ଥୁଲ ପଡିଅଛି ହୁରି
ଶିବଭକ୍ତେ କରିଛନ୍ତି ଫତୁଆ ଜାରି
କରିବେ ଧର୍ମଘଟ ଆଉ ଯମପୁର ଘେରାଉ
ଯମଙ୍କ ନିୟମ କାଟୁ କରୁନାହିଁ ଆଉ
ଦେବଲୋକେ ଧର୍ମଘଟ ନୂତନ ଖବର
ମାଓବାଦୀ, ନକ୍ସଲ, ଉଲଫା ଚଳିଲେ ସତ୍ୱର
କୈଳାସପୁରେ ଭେଟିଲେ ଶିବଭକ୍ତ ଗଣ
ଲାଲସଲାମ ଦେଇ ପୁଛିଲେ କାରଣ
ମର୍ତ୍ତ୍ୟେ ନରନାରୀ ଆୟୁଷ ଏବେ ବଢୁଛି
ମୃତ୍ୟୁରୋକ ବାବା ରାମଦେବ କହୁଛି
ଧରାଧାମେ ନରନାରୀ ହୋଇଲେ ଅମର
ଶିବ କ'ଣ ଭସ୍ମ ପାଇଁ ଯିବେ ବିୟୁଟି ପାର୍ଲର
ଏକସଙ୍ଗେ କ୍ରାନ୍ତିକାରୀ  କଲେ ନାଁ ନାଁ ଚିତ୍କାର
ଏହାର ସମାଧାନ ତୁରନ୍ତ ଦରକାର

ପ୍ରସ୍ତାବ ଗୃହୀତ ହେଲା ସହମତି ନେଇ
ବ୍ରହ୍ମାଙ୍କ ପାଖେ ଯିବେ ଦାବିପତ୍ର ନେଇ
ବ୍ରହ୍ମା ଶୁଣିଲେ ଭକ୍ତଙ୍କ ବେଦନା
ହେବ ସମାଧାନ ଦେଲେ ସେ ଆଶ୍ୱାସନା
ଦେବ ଲୋକେ ଚାଲିଲା ମନ୍ତ୍ରଣା
ରୋଗ ବୈରାଗ ରାସ୍ତା ଦୁର୍ଘଟଣା
ଦୈବି ଦୁର୍ବିପାକ ଯାବତ ଯାତନା
ଯଥେଷ୍ଟ ନୁହଁଇ କରିବାକୁ ଭସ୍ମର ଭରଣା
ଯୁଗ ବଦଳୁଛି ସେ ସବୁ ହେଲାଣି ପୁରୁଣା
ଯୁକ୍ତ ହେବ କିଛି ନୂତନ ଯାତନା
ବାତ୍ୟା ବନ୍ୟା ସୁନାମୀ କାଟ୍ରିନା ରିଟା ଓ ମରୁଡି
ଗୋଟିକ ପରେ ଗୋଟିଏ ଧରାଧାମେ ଦେବୁ ହେ ଅଜାଡି
ଶୁଭୁଥିବ କରୁଣ ଚିତ୍କାର କରୁଥିବେ ରଡି
ଭସ୍ମର ଅଭାବ ଦୂର ହେବ ସଂଶୟର ହେବ ଅବସାନ
ଶିବଭକ୍ତଙ୍କର ରହିଯିବ ମାନ
ନୀତି ନିୟମର ହେବନି ସଂଶୋଧନ

❑❑

# ବାଲୁଙ୍ଗା ଚାଷ

କଳା ଚଷମାକୁ ମୁକୁଳା କେଶ
ଠାକେରା ଗାଲରେ ନିଲଠା ହସ
ବୋପା ଧନେ କିଣା ସ୍କୁଟିକୁ ଚଢି
ହାବେଳି ପରାଏ ଯାଆନ୍ତି ଉଡି ।

ଲକରରେ ଥିବା ଇଜ୍ଜତ ପେଡି
ବଜାରରେ ଯାଏ ସେ ଗଡି ଗଡି ।
ବେଶଭୁଷା ଆଉ ବେଣୀ ଷ୍ଟାଇଲି
କହିଲେ ଆମର ହେବ କାଇଲି ।

ଦାଣ୍ଡେ ଚାଲୁଥାଏ ସେ ହଲି ହଲି
ଛାଇକୁ ଦେଖଇ ସେ ବୁଲି ବୁଲି ।
ଉଛନିଆ ମନ ମସ୍ତ ଯୌବନ
ବାତେରା ଟୋକାଙ୍କ ରଙ୍କୁଣୀ ଧନ ।

କଥାରେ ଆଖିରେ ମାରନ୍ତି ତୀର
ଖାଲି ମୋବାଇଲି ପ୍ରେମ ଜୁଆର ।
ଚଗଲି ଭାବେ ସେ ଏକା ସୁନ୍ଦରୀ
ମରିଚିକା ସମ ଖାଏ ସେ ଖୁରୀ ।

ଭାବଇ ସୁପର ତାର ଷ୍ଟାଇଲି
ତେଣୁ ହସିଥାଏ ସେ ଖିଲି ଖିଲି ।
ଏକାମ୍ର ହାଟରେ ହୁଏ ମିଳନ
ନାଲି କୋଠାଘରେ ପୁଣି ବିଚ୍ଛିନ୍ନ ।

ପେରେମ କଥାଟା କହିବା କିସ
ଛାତ୍ରୀଙ୍କୁ ଗୁରୁଏ କରନ୍ତି ବଶ ।
ଟୋକା ବୁଲୁଛନ୍ତି ହୋଇ ହତାଶ
ଧନ୍ୟ ବୋପା ମାଆ ଧନ୍ୟ ଏ ଦେଶ ।
କରୁଛନ୍ତି ଖାଲି ବାଲୁଙ୍ଗା ଚାଷ ।





# ଏକ ସ୍ୱପ୍ନ

ମୁଁ ଦିନେ ସ୍ୱପ୍ନ ଦେଖିଲି
ମୁଁ ଗୋଟାଏ ଗଧ ପାଲଟିଛି
ଚେହେରାଟା ବଦଳି ଯାଇଛି
ଜୀବନ ଶୈଳୀ ଓଲଟିଛି
ମୁଁ ନିହାତି ଆରାମରେ
ୱାଇ, ଜେଡ୍ ସୁରକ୍ଷା ମଧ୍ୟରେ
ହେଉଅଛି ଆତଯାତ
ମୋ ବୋଝକୁ ବୋହି ବୋହି
ଜନତା ହନ୍ତସନ୍ତ ।।

ଆଉ ଦିନେ ଦେଖିଲି ସ୍ୱପ୍ନ
ପାଲଟିଛି ମୁହିଁ ଏକ ମାଙ୍କଡ
ଛାଡିଦେଇ ରାମ୍ପୁଡା କାମ୍ପୁଡା
କରୁଅଛି ଛୁରାମାଡ ଡେଉଁଛି
ଗଛରୁ ଗଛକୁ ନୁହେଁ
ଏଦଳରୁ ସେ ଦଳ ଡେଉଁଛି
ସେଇ ମୋର ଏକାନ୍ତ ମାଲିକ
ଯିଏ ଯେବେ କ୍ଷମତା ଦେଉଛି ।।

ସପନେ ଦେଖିଲି ଆଉ ଦିନେ
ପାଲଟିଛି ସୁନ୍ଦର କୁକୁର
ବିଳାସୀ ଜୀବନ ମୋର
ଯେମିତିକି ବଡ ଅଫିସର
ତୁଳିତଳ୍ପ ଶେଯରେ ଶୋଇଛି
ତାରାଯୁକ୍ତ ଭୋଜନାଳୟରେ
ପେଟପୂରା ବିଲାତି ପିଉଛି
ଚାରି ପାଖେ ମୋର ଖଞ୍ଜା
ଶତ ଶତ ତଳିଆ ସେବକ
ମୋର ଉଚ୍ଛିଷ୍ଟ ଭୁଞ୍ଜନ୍ତି
ସ୍ତବ ଗାନ କରି
ରାମ୍ପୁଡନ୍ତି ଆପଣାର ବେକ ॥

ଏବେ ଦିନେ ଦେଖିଲି ସପନ
ମୁଁ ଗୋଟାଏ କବି ପାଲଟିଛି
ତା ପରର କଥା ସବୁ ସ୍ୱଷ୍ଟ
ମୁହଁ ଖୋଲା କହିବିନି କିଛି ॥

□□

# ଅବଳା

କେଶ ମୁକୁଳା ଅଧା ଫୁଙ୍ଗୁଳା
ସାହି ବସ୍ତିରେ ଘୁରେ ଅବଳା
ନଗର ଦାଣ୍ଡେ ଉଦଣ୍ଡେ ନାଚେ
ସରମ କଥା ଭାବେନି ଟିକେ ॥

ବିଦେଶୀ ଶିକ୍ଷା ମହୁଲି ନିଶା
ଥୋକାଏ ଭୋଗନ୍ତି ଶନିଙ୍କ ଦଶା
ଅବଳାର ସାଥି ରୋମିଓ ଟୋକା
ବୋପା ଓ ମାଆ ବନନ୍ତି ବୋକା ॥

ରୋମିଓ ଟୋକାର ଗଜରା ନିଶ
ପକେଟ ଖାଲି ନାହିଁ ସାହସ
ପୁଲିସ ଭାଇ ଭାବକୁ ନେଇ
ଆଇନ ଆଳରେ ଦିଏ ଫସେଇ ॥

ନାରୀ ଭାବନାରେ ବିଷମ ସ୍ଥିତି
ଇଚ୍ଛା ନାହିଁ ସନ୍ତାନ ସନ୍ତତି
ଏକ ସନ୍ତାନରେ ତୁଷ୍ଟିକରଣ
ବହୁତ କଷ୍ଟ ସେ ଗର୍ଭ କଷଣ ॥

ବାହାରେ ଖାଇଲେ ଆତ୍ମ ସନ୍ତୋଷ
ରୋଷେଇକୁ ନା ଦେହ ଅବଶ
ଗାଇ ବୁଲୁଥାନ୍ତି ଗୋଟିଏ କଥା
ଶାଶୁ ଓ ଶ୍ୱଶୁର ଦିଅନ୍ତି ବଥା
ମାନେ ନାହିଁ ଖାଲି ଅଯଥା କଥା
ପୁରୁଣା କାଳିଆ ଭାବନା ଚିନ୍ତା ॥

□□

# ତୁ ସି.ବି.ଆଇ. ନେଇ ଆ

ପାର୍ବଣ ପୂଜାରେ ଆସିବୁନି "ମା"

ମାତିଛନ୍ତି ନିଶାଖିଆ

ଧନର ପ୍ରଭାବେ ମହାବଳିୟାନ

ଧରାରେ ମିଳେନି ରାହା ॥

ପୂଜା ମଣ୍ଡପ ଝଲସି ଉଠୁଛି

ଭକ୍ତି ସବୁ ଦେଖାଣିଆ

ସାଧୁ ସନ୍ଥ ଜନ ଉଭେଇ ଗଲେଣି

ଦେଶେ ଭଣ୍ଡ ବାବା ମାଆ ॥

ଆଶ୍ରମରେ ଏବେ କାମିନୀ କାଞ୍ଚନ

ଶୁଣିଲେ ଲାଗୁଛି ଦୁଃଖ

ପ୍ରମିଳା ମେଳରେ ବାବାଏ ପାଗଳ

ଭକ୍ତ ଦେଖି ହତବାକ ॥

ଦୁର୍ଗତୀ ନାଶିନୀ ବିପଦ ତାରିଣୀ

ସିଂହ ବାହିନୀ ମୋ "ମାଆ"

ଅନିତି ବନ୍ୟାରେ ଉବୁଟୁବୁ ଦେଶ

ମା' ସି.ବି.ଆଇ. ନେଇ ଆ ॥



# ଦୁଲୁକୁଛି

(୧)

କଟକ ଦୁଲୁକି ଥାଏ ଦଶହରାରେ
ଚାନ୍ଦି ମେଢ଼ରେ ଭାଇ ଚାରାରେ
ଢେଙ୍କାନାଳ ଦୁଲୁକେ ଲକ୍ଷ୍ମୀ ପୂଜାରେ
ତୋରଣ ଝିଲିମିଲି ଆଲୁଅରେ
ସମ୍ବଲପୁର ଦୁଲୁକେ ଶୀତଳ ଷଷ୍ଠୀରେ
ଢୋଲ ବାଜାରେ, ହିଞ୍ଜିଡ଼ା ନାଚରେ
ପୁରୀଧାମ ଦୁଲୁକେ ଘୋଷ ଯାତରେ
ବୋଲି ବାଣୀରେ, ଘଣ୍ଟ ମାଡ଼ରେ
ବରଗଡ଼ କମ୍ପି ଥାଏ ଧନୁଯାତ୍ରାରେ
କଂସ ସଭାରେ କୃଷ୍ଣ ଲୀଳାରେ
କାକଟପୁର ଝୁମିଯାଏ ଝାମୁଯାତ୍ରାରେ
ପାଟୁଆ ନାଚରେ ନିଆଁହୁଳିରେ ।

(୨)

ନେତା ଦୁଲୁକନ୍ତି ବନ୍ୟା ବାତ୍ୟାରେ
ଟଙ୍କା ଥଳିରେ ଚିତା କଟାରେ ପିଟା ପିଟିରେ
ରାଜଧାନୀ ଦୁଲୁକେ ଶୋଭାଯାତ୍ରାରେ
ଅନଶନରେ, ଛିନତାଇରେ ଢୋଡା ଗୁଳିରେ
ଶିକ୍ଷିତ ଦୁଲୁକନ୍ତି ପାଶ୍ଚାତ୍ୟ ସଂସ୍କୃତିରେ
ରାସ୍ତା ଘାଟରେ, ହୋଟେଲରେ ପ୍ରେମ ନିଶାରେ ।

ଠଠ

# ପୁରୁଣା ନୂଆର ଗାଥା

ଗଣି ଗଣି ଗଲା ତିନିଶହ ଚଉଷଠୀ
ପରଦିନ ପୁଣି ନୂଆ ବାହାଘର
ଆସିବ ନୂଆ ଚଉଠି ।
ବାଇଦ ବାଜିବ ରୋଷଣୀ ଜମିବ
ଇନକୋର ହେବ, ବମ୍ ଫୁଟିବ
ନଥିବ ପୋଡ଼ା ନଡ଼ିଆ ।
ସମସ୍ତେ କହନ୍ତି "ଶୁଭ ନବ ବର୍ଷ"
ମାଉଁସ କେକ୍ ଖିଆ ।।

ହାୟ ତୁମେ ଯେବେ ରାତି ଅଧଟାରେ
ଆସିଲ ଚରଣ ଚାଲି
ମଦ ପିଇ ଦଳେ ମାତାଲ ନାଚିଲେ
ମଉଜ ବେଦୀରେ ବଳି ପଡ଼ିଗଲେ
କେତେଯେ କୁକୁଡ଼ା ଛେଳି ।।

ଅତୀତ ବର୍ଷର ପରମାୟୁ ନେଇ
ନବବର୍ଷ ହେଲା ତୁମ ପାଇଁ ଶୁଭ
ତୁମ ଉଲ୍ଲାସରେ ଜୀବନ ହାରିଲେ
କେତେ ଯେ ନିରୀହ ଜୀବ ।।

କୁଆଡ଼େ ହଜିଲା ମଣ୍ଡା ଓ ଚକୁଳି
ଏବେ ଚାଇନିଜ ରୋଲ
ନମସ୍କାର ପ୍ରଣାମକୁ ଛାଡ଼ି
ମର୍ଣ୍ଣିଂ ଇଭିନିଂ ବୋଲ ॥
ଆଗରେ ଦେଖିଲେ ଆପଣା ଜନକୁ
ଦୁଃଖରେ ସତେକି "ହାୟ"
ଉଧାର ସଭ୍ୟତା ପାଖେ ଏ ସଂସ୍କୃତି
ଲଭି ଅଛି ପରାଜୟ ॥
ନାଆଁ ନୂଆବର୍ଷ ନୂତନତା ନାମେ
ପାଗଳାମୀ ଚରା ଭୂଇଁ
ସେଇ ଭାଣ୍ଡାମିର ପୁନରାବୃତ୍ତି
ବିରାମ ତାହାର କାହିଁ ।



# ଝିଅଖୋଜା

ଆକାଶ କଇଁଆ ଝିଅଟିଏ ସିଏ
ସମ୍ବଲପୁରର ନନୀ
ନିଜ ଜାଗା ଛାଡ଼ି ଆସିବନି ସିଏ
କହେ ସମଲେଶ୍ୱର ରାଣୀ
ବନ୍ଧୁ ବାନ୍ଧିବାକୁ ମନ କର ଯଦି
ଭାଷାରେ ରଖିବ ଦରଦି
ରୋଷଣୀ ଗର୍ଜିଲେ ବାଣ ବାଜାରେ
ଆଇନରେ ହେବେ ଛନ୍ଦି ॥
ପାହାଡ଼ ଘେରା ରାଇଜର
ସରଳ ମତିର ଝିଅ
ବନାଞ୍ଚଳେ ସିଏ ଘୁରି ବୁଲୁଥାଏ
ନଥାଏ ନକ୍ସଲ ଭୟ
ବନ୍ଧୁ ବାନ୍ଧିବାକୁ ମନକର ଯଦି
ଯୌତୁକ କଥାଟି ଭୁଲ
ବନ୍ଧୁ ପରିଜନ ଯାତରା ଜମିବ
ଭୁବନେଶ୍ୱରକୁ ଚାଲ ॥
ଭଞ୍ଜ ଅଞ୍ଚଳର ଝିଅଟିଏ ସିଏ (କନିଆ ରତନ)
କଥାଟି ତେଲୁଗୁ ମିଶା
ସୁପୁଲି ମହୁଲି ସବୁ ଭରପୁର
ତଥାପି ମେଣ୍ଟେନି ଆଶା
ବନ୍ଧୁ ବାନ୍ଧିବାକୁ ଇଚ୍ଛାକର ଯଦି
ଭୋଗିବ ଶନିଙ୍କ ଦଶା ॥

ଓଡ଼ିଶା ବେଙ୍ଗଲ ସୀମା ରାଇଜର
ଝିଅ ରତନର ବାସ
କଥାଟି ମଧୁର କାମେ ଧୁରନ୍ଧର
ମୁହଁଟିରେ ଥାଏ ହସ
ବନ୍ଧୁ ବାନ୍ଧିବାକୁ ଇଛାକର ଯଦି
ଖାଇବ ମୁଢ଼ି ମାଉଁସ ॥
ଡଉଲ ଡାଉଲ ଝିଅଟିଏ ସିଏ
କରୁଥାଏ ବୋଲିବାଣୀ
ଠିକଣା କଥାଟି ପଚାରିଲେ ତାକୁ
କହେ ସିଏ ଲକ୍ଷ୍ମୀରାଣୀ
ବନ୍ଧୁ କରିବାକୁ ଯଦିଭାବ କେବେ
ପିଇବ ଟଙ୍କତୋରାଣୀ ॥
ଚନ୍ଦ୍ରମା ଯେସନ ଝିଅଟି ତେସନ
ମାଆଟ କଟକିଆଣୀ
ବୁଝିସୁଝି ବନ୍ଧୁ କାମ ଚଳାଇବ
କଥା କହିବନି ଟାଣି
ଝିଅଙ୍କ ଅଭାବ ଦେଶରେ ହୋଇଛି
ପୁଅଙ୍କ ଏବେ ଭାଳେଣୀ
ବାହା ହେବା କଥା ପଚାରିଲେ ତାଙ୍କୁ
ହେବେ ନାହିଁ ସେ ଗୃହିଣୀ
ପୁଅର ବିବାହ ବୟସ ହୋଇଛି
ବାପା ଖୋଜୁଛନ୍ତି ଝିଅ
ସାରା ରାଇଜ ବୁଲି ସାରିଲେଣି
ଶେତା ପଡ଼ିଅଛି ମୁହଁ ॥

❑❑

# ସ୍ୱାଧୀନ ଚେତା

ସ୍ୱାଧୀନ ଦେଶରେ ଚାଲିଛି ପ୍ରଗତି
ରଡି କରୁଛନ୍ତି ନେତା
ଜନତା କାନ୍ଦଇ ଅର୍ଥର ଅଭାବେ
ମୁହଁ ପଡିଯାଏ ସେତା ॥
ଧର୍ଷଣ ଲୁଣ୍ଠନ ଅନୀତି ଦୁର୍ନୀତି
ବାନ୍ଧିଲାଣି ବସାଘର
ଆଇନ କାନୁନ ପାଖରେ ରହିଛି
ସାକ୍ଷୀ ଦେବା ପାଇଁ ଡର ॥
ଶିକ୍ଷିତ ସମାଜ ଅମଣିଷ ହୋଇ
ଭୁଲି ଯାଉଅଛି ବାଟ
ବିଦେଶୀ ଭାବକୁ ନିଜର କରୁଛି
ନିଜ ସଂସ୍କୃତିକୁ ଛେଟ ॥
ଓକିଲ ପୁଲିସ ଶାସକ ଶିକ୍ଷକ
ଅର୍ଥ ପାଇଁ ଆଜି ଭୋଳ
ଶିକ୍ଷିତ ଶିକ୍ଷିତା ସଂସ୍କାର ନାମରେ
କରିଥାନ୍ତି ସଦାଗୋଳ ॥
ନାରୀ ନିର୍ଯ୍ୟାତନା ବଢି ବଢି ଯାଏ
ସ୍ୱାଧୀନ ଚେତନା ପାଶେ
ସ୍ୱାମୀ ସ୍ତ୍ରୀ ଧର୍ମ ନିମିତ୍ତ ମାତର
ସମାଜ ସଂସ୍କାର ନାଶେ ॥



# ଚିର ବସନ୍ତ

ହୋଇଗଲେ ଶୀତ ଋତୁ ଅନ୍ତ
ଧରାବକ୍ଷେ ପ୍ରବେଶ ବସନ୍ତ
ଉତ୍‌ଫୁଲ୍ଲିତ କରାଏ ଜୀବନ
ସ୍ପର୍ଶ ହୁଏ ନବଯୌବନ
ପ୍ରେମିକ ପ୍ରେମିକା ହୋଇ ଉଦବେଳିତ
ସାଥିରଦିବସ (ଭାଲେଣ୍ଟାଇନ ଡେ) ପାଳନ୍ତି ଗର୍ବେ ।
ଉତ୍ସବ ମୁଖର ହୁଏ ସମାଜେ ଜନ
ବର୍ଷ ମୁଖଟି କିନ୍ତୁ ଦିଶଇ ମଳିନ
ଏହି ଋତୁଟି ହିଁ ତାର ଜରାଜୀର୍ଣ୍ଣ ବେଳ
ଏହିଠାରୁ ସରିଯିବ ବରଷକ ଖେଳ
ଆରମ୍ଭ ହୋଇବ ନୂତନ ବରଷ
କେତେ ଅଭିନନ୍ଦନ ପୁଣି ଖିଲି ଖିଲି ହସ
ଇତିହାସେ ରହିଯିବ ବରଷର କଥା
ଯାତନା ନିର୍ଯ୍ୟାତନା ହସ ଓ ଦୁଃଖର ଗାଥା
ବର୍ଷକର ଶେଷଋତୁ ହେଲେବି ବସନ୍ତ
ଋତୁରାଜ ରୂପେ ଅଟେ ପ୍ରତିଷ୍ଠିତ ।

କୋଇଲିର କୁହୁ କୁହୁ ତାନ
କୃଷ୍ଣଚୂଡ଼ା ପଳାଶଫୁଲ ମୋହି ନିଏ ମନ

କବି ହୃଦୟର କଳ୍ପନାର କୋଣେ
ଫୁଟିଉଠେ କେତେ ମନୋରମ କଥା
ବୋଲା ବୋଲି ଫଗୁ ରାଧାକୃଷ୍ଣ ମେଳେ
ଭୁଲନ୍ତି ଭେଦ ଭାବ ଏ ଜନ ଗହଳେ
ପ୍ରେମିକ ପ୍ରେମିକାଙ୍କ ଉନ୍ମାଦନା
ଜନ ସମାଜ ପାଆନ୍ତି ପ୍ରେରଣା
ଧରଣୀ ବକ୍ଷ ସୁଶୋଭିତ
ଧନ୍ୟ ଧନ୍ୟ ହେ ବସନ୍ତ
ତୁମେ କେତେ ମହାନ ।





# ନୂଆବର୍ଷ

ନୂଆବର୍ଷ ତୁମେ ଆସିଛ ସେଇ ନିର୍ଦ୍ଦିଷ୍ଟ ବ୍ୟବଧାନ ପରେ
ଋତୁର ଘୂର୍ଣ୍ଣନ ବନ୍ଧା ଯହିଁ ଏକ ନିୟମରେ,
ନିୟମର ଚକ ଗଡେ ପୃଥିବୀ ପୃଷ୍ଠରେ
ପ୍ରକୃତି ରାଣୀ ମନ କିଣେ ଏ ସାରା ସଂସାରେ
ଆଜି ସେ ପୃଥିବୀ ଅଛି ପ୍ରକୃତି ବି ଅଛି
ଅଛି ପୁଣି ମାନବ ସମାଜ
କିନ୍ତୁ ନାହିଁ ସେହି ନୀତି ଓ ନିୟମ
ଅଛି ଖାଲି କ୍ଷତ ବିକ୍ଷତ, ବିବର୍ଣ୍ଣ ପୃଥିବୀ ॥

ଗୁରୁଭକ୍ତି ଗୁରୁ ପୂଜା ସ୍ୱପ୍ନ ଖାଲି ସ୍ୱପ୍ନ
ପୁଣି ଋଳେ ପୂଜା ଉପଢୌକନ, ମାନପତ୍ର
ସୀମାନ୍ତର ଆହ୍ୱାନକୁ ନେଇ ।
ଲାଗେ ସବୁ ପୁରୁଣା ପୁରୁଣା
"ପରୋପ କାରାୟ ସ୍ୱର୍ଗାୟ''
ଝାପସା ଦିଶେ ଭଗବତ ଚିନ୍ତା,
ପୁରାଣ, ଭାଗବତ
ସ୍ୱାର୍ଥ ତରଙ୍ଗାୟିତ ପ୍ରାଣେ ॥
ହେ ଅନନ୍ୟ ନବବର୍ଷ
ଦେଇକି ପାରିବ ତୁମ୍ଭେ
କିଛି ସ୍ୱାଭିମାନ ଓ ଆତ୍ମଚେତନା
ନୂଆ ବର୍ଷେ ଏହାହିଁ ପ୍ରାର୍ଥନା ॥



# ଅପରାଧୀ କିଏ

ସର୍ବେ ଭବନ୍ତୁ ସୁଖୀନଃ ଭଗବତ୍ ବାଣୀ
ସାଧୁ ସନ୍ଥ ନେତା ପ୍ରଶାସକ ସମସ୍ତେ ଏକମତ
ଚିହ୍ନା ପଡେ ନାହିଁ ଶୋଷକ, ଭକ୍ଷକ, ଚୋର, ଡକାୟତ
ତେବେ ଅପରାଧୀ କିଏ ?
ଏହାର ସଠିକ ଉତ୍ତର ଦେବ କିଏ ?
ଦେବତା ଅସୁର ନା ମାନବ ?
ପୁଲିସ କହେ ଚୋର, ଚୋର କହେ ପୁଲିସ
ଶାସକ କୁହନ୍ତି ବିରୋଧୀ ଦଳ
ସମସ୍ତେ ଚାହାନ୍ତି ଧରିବାକୁ ଶାସନର ଡୋର
ଜାବୁଡି ଧରିଥିବେ ନ କରି ବିଚାର
ବିଜ୍ଞାନୀ କହେ ଅପରାଧୀ ମାନବ ସମାଜ
ଲୁଣ୍ଠନ କରେ ପ୍ରକୃତି ଚରିତ୍ର
ବିଦ୍ୟା ହରାଇଛି ସ୍ୱାଭିମାନ
ବିଦ୍ୟାର୍ଥୀର ସଂନ୍ଦୀପିତ ବିଦ୍ୟା ଆହରଣ ।
ଛଳନା ପ୍ରଲୋଭନ
ଭଣ୍ଡିବାକୁ ନିରୀହ ଜନତା
ଯେଉଁ ଦେଶେ ସମସ୍ତେ ନୀରବ ଦ୍ରଷ୍ଟା
କଥା କହେ ନାହିଁ ବିଧାତା
ସବୁ ସେ ଦେଖୁଛି ଶୁଣୁଛି
ଭକ୍ତ ଭଗବାନ ମଧ୍ୟେ
ମାନସିକ ସନ୍ତୁଳନ ଚାଲିଛି ଚାଲିଥିବ ।
ଯେ ପର୍ଯ୍ୟନ୍ତ ଆତଯାତ ସୂର୍ଯ୍ୟଚନ୍ଦ୍ର
ତେବେ ଅପରାଧୀ କିଏ ?

ଘଘ

# ଆଶ୍ୱସ୍ତ ଧରଣୀ

ନିଦାଘ ଗ୍ରୀଷ୍ମେ ଉତ୍ତପ୍ତ ଧରଣୀ
ଅତିଷ୍ଠ ଜୀବଜନ୍ତୁ ମାନବ ସକଳ
ଆତୁରେ ଅପେକ୍ଷା ବର୍ଷା ଆଗମନ
ବର୍ଷା ଅଟେ ଅତି ପ୍ରିୟ ଜୀବ ଜଗତର ?
ବିଶାଳ ଧରଣୀର ଉତ୍ତପ୍ତ ବକ୍ଷକୁ
ଉପଶମି ଦେବ ବାରିଧିର ଧାରା
ବୃକ୍ଷଲତା ସବୁ ପଲ୍ଲବିତ ହେବେ
ପୂର୍ଣ୍ଣ ଗର୍ଭା ହେବ ନଈ ନାଳ
ମରୁଭୂମି ଧରା ହେବ ବିମୋହିତ
ଶୀତଳ ପରିବେଶେ ହେବେ ଉଲ୍ଲସିତ
ଜଗତର ସାଇଁ କିନ୍ତୁ ଶୋଇଥିବେ ବର୍ଷା ଚାରିମାସ
ଘାତ ପ୍ରତିଘାତ ମଧ୍ୟେ ଚାଲୁଥିବେ ରଖି ହୃଦେ ଧୈର୍ଯ୍ୟ
ଚାଷୀ ହସିବେ ହେଲେ ପୁଷ ମାସ
ଛାତ୍ର ଓ କୃଷକ ଆରମ୍ଭିବେ ବର୍ଷକର କାର୍ଯ୍ୟ
ଶିବ ଶିରେ କାଉଡିଆ ଢାଳି ଦେବେ ପାଣି
ଶକ୍ତି ଶାନ୍ତିରେ ଆଶ୍ୱସ୍ତ ହେବ ଏ ଧରଣୀ ।



# ଜୀବନ

ଜୀବନର ସାୟାହ୍ନରେ
ବ୍ୟଥିତ ହୃଦୟ ଅବସାଦ ଅଙ୍ଗ
ଯନ୍ତ୍ରଣାର ଦୁଃଖଦ ସ୍ଥିତି
ଖାଲି ଅନ୍ଧକାର ଅନ୍ଧକାର
ସୂର୍ଯ୍ୟାସ୍ତ ଅନ୍ତେ ଯେହ୍ନେ ଧରଣୀ
ପ୍ରକୃତିର ପରିବର୍ତ୍ତନଶୀଳ ଚକ୍ର
ବାଳ ଯୁବା ବୃଦ୍ଧ ।

ଦ୍ୱିତୀୟା ଜହ୍ନଠାରୁ ପୂର୍ଣ୍ଣମୀ ଚନ୍ଦ୍ର
ଠିକ୍ ବ୍ୟବଧାନ ପରେ
ପ୍ରକୃତି ନିୟମର ହେବନାହିଁ ଭୁଲ
ଜୀବନ ଅବସାନ ପରେ
କିଏ ଜାଣେ କ'ଣ ତା'ର ଭବିଷ୍ୟତ
ଜ୍ଞାନୀ ଋଷି କହନ୍ତି ଅନେକ
ଧର୍ମଶାସ୍ତ୍ରେ ଅନେକ ତାରେଣା
କିନ୍ତୁ ପ୍ରମାଣ ଦୁଃସାଧ୍ୟ ।

ପ୍ରକୃତି ନିୟମେ ନାହିଁ ବ୍ୟତିକ୍ରମ
ଜୀବନରେ ସୁଖ ଦୁଃଖ ତାହା ହିଁ ନିୟତି
ଜାଣେ ସେ ମନୁଷ୍ୟ ନିଜ ବୁଦ୍ଧିମତେ
ତଥାପି ଭୁଲେ ସେ ଅନେକ
ଦୁଃଖ ପାଏ ହୋଇ ପଥଭ୍ରଷ୍ଟ
ସୁଖ ଚାଲିଯାଏ ବହୁଦୂର ।

ମୋହ ମାୟା ଜାଲ ଚକ୍ରର ସଂସାର
ଅଜାଣତେ ବାନ୍ଧି ହୋଇଯାଏ
ଭୁଲିଯାଏ ମହାଯାତ୍ରା କଥା
କେହି ନୁହଁଇ କାହାର ଏ ସଂସାରେ
କାନ୍ଦିବେ ବନ୍ଧୁ ପରିବାର
ଅସ୍ଥାୟୀ ନୀରବତା ପରେ
ପୁଣି ସୁଖର ଆସର ।
ଏହିତ ନିୟତି କରାଳ ନିୟମ
"ଅଖଣ୍ଡ ମଣ୍ଡଳାକାର"
ବିରୁଦ୍ଧାଚରଣ ନୁହଁଇ ସମ୍ଭବ
ସଂସାର ସାଗରେ ଜୀବନ ନୌକା
ଚାଳକ ତାହାର ଜଗତପତି ।



# ନାରୀ ଦୁଇପଦ

(୧)

କିଏ କହେ ସିଏ ଦୁର୍ବଳା ଅବଳା
ସ୍ୱାଧୀନ ଦେଶର ସ୍ୱାଧୀନ ପ୍ରମିଳା
ସଭାରେ ଗର୍ଜଇ ସେ ଫଟାଇ ଗଳା
ହୋଇଥାଉ ପଛେ ଦେହ ମୁକୁଳା
କବିର ଲେଖନୀରେ ବନିତା ଅବଳା
ପୁରୁଷଙ୍କ ମେଳରେ ଏବେ କରଇ ମେଳା
ଆଇନ ହାତକୁ ନେଇ ସେ ପ୍ରମିଳା
ସମାଜ ବୁକୁରେ କରୁଛି ଲୀଳା

(୨)

ପାଦକୁ ସୁନ୍ଦର ଅଳତା ଯାହାର
ସିଏ ଆମ ଲବଙ୍ଗ ଲତା
ଘରଣୀ ହୋଇ ସିଏତ ଆସିବ
ନାଇବ ସିନ୍ଦୂର ଟୋପା
ଅବଳା ଦୁର୍ବଳା ନୁହେଁ ସେ ପ୍ରମିଳା
ହସୁଥାଏ ଖିଲି ଖିଲି
ସେବା ମନୋବୃତ୍ତି ଉତ୍ତମ ସଂସ୍କୃତି
ଝଲିତାର ମଖମଲି ॥



# "ଛି"

ବୁଢା ହେଲେ ଲୋକ ଛି
ଅବକ୍ଷୟ ଶରୀର ଛି
ନିଃସଙ୍ଗ ଜୀବନ ଛି
ଧର୍ମନାମେ ହିଂସା ଛି
କଳଙ୍କିତ ଇତିହାସ ଛି
ଦୁର୍ନୀତି ହିଂସାର ଦେଶ ଛି
ମାତ୍ରାଧିକ ପ୍ରଥା ଛି
ନାରୀ ନିର୍ଯ୍ୟାତନା ଛି
ଭାଷାସଂସ୍କୃତିର ଭଙ୍ଗା ଛି
ଅପସଂସ୍କାର ବୃଦ୍ଧି ଛି
ଅତିକୁ ସର୍ବଦା ଛି
ଦାନ, ମାନ, ଦର୍ପ ଛି
ଶୁପ୍ତ ଗଣତନ୍ତ୍ର ଛି



# ଚରିତ୍ର

ସଜେଇ ପାରିଲେ ଗଭା ସୁନ୍ଦର
ବଜେଇ ପାରିଲେ ବାଜା ସୁନ୍ଦର
ନାଲି ଅଧରରେ ଓଠ ସୁନ୍ଦର
ବାଙ୍କ ଖହାଁଣୀରେ କାହ୍ନୁ ସୁନ୍ଦର
ନୀଳ ଆକାଶରେ ଜହ୍ନ ସୁନ୍ଦର
କୁନି ଅଧରରେ ଭାଷା ସୁନ୍ଦର
କବି କଳପନା ଭାଷା ସୁନ୍ଦର
ସବୁଜ କ୍ଷେତରେ ଗାଁ ସୁନ୍ଦର
ନନ୍ଦୀଘୋଷ ପରେ ଜଗା ସୁନ୍ଦର
ରଜା ବସିଥିଲେ ହାତୀ ସୁନ୍ଦର
ସୁଖେ ଥିଲେ ପ୍ରଜା ରାଜ୍ୟ ସୁନ୍ଦର
ସିନ୍ଦୁର ମଥାରେ ନାରୀ ସୁନ୍ଦର
ଝରଣାର କୁଳୁ ନାଦ ସୁନ୍ଦର
ସାତ୍ତ୍ୱିକ ନୀତିରେ ସବୁ ସୁନ୍ଦର
ଚରିତ୍ର ବିହୁନେ ସବୁ ଅସାର ।



# ସାବଧାନ

ଶୁଣିଥିଲି ପିଲାଦିନେ ସଞ୍ଜବେଳେ
ଜେଜେମା ଠାରୁ ରାଜା ଅସୁର କାହାଣୀ
ଗାଁ ଦାଣ୍ଡେ ରାତିର ଅନ୍ଧାରେ
ଚୌକିଦାର କହୁଥାଏ ସାବଧାନ ସାବଧାନ
ପୁରାଣେ ଲିଖିତ ରଣଭୂଇଁରେ
ଶତ୍ରୁପକ୍ଷ କହେ ସାବଧାନ ସାବଧାନ ॥

ଏବେ କମ୍ପାନୀ କହୁଛି ନକଲି ପ୍ରତି ସାବଧାନ
ଗେଟ୍‌ରେ ଫଳକ ଝୁଲେ କୁକୁର ପ୍ରତି ସାବଧାନ
ଗହଳି ଯାଗାରେ ମାଇକ୍ ଗରଜେ
ପକେଟମାର ପ୍ରତି ସାବଧାନ
ହ୍ୟାଣ୍ଡବିଲ୍ ଲେଖାଇ ପୁଲିସ କହେ
ଚୋର ପ୍ରତି ଥାଅ ସାବଧାନ ॥

ଶିଷ୍ୟ କହିଲେଣି ଏବେ ଗୁରୁଙ୍କୁ ସାବଧାନ ।
ସଚେତନ ନାରୀ ଆଇନ ଆଳରେ
ଶ୍ୱଶୁର ସ୍ୱାମୀକୁ କହୁଛି ସାବଧାନ
ନକ୍ସଲମାନେ ଧନୀକଙ୍କୁ କହେ ସାବଧାନ
ସାବଧାନ ସାବଧାନ ବୋବାଳି ପଡୁଛି
ସମସ୍ତେ କହୁଛନ୍ତି ସାବଧାନ ॥
ସାବଧାନ ସାବଧାନ ସଭିଏଁ କହିଲେ
ସାବଧାନ କଥା ମାନିବ କିଏ ॥

ଘଘ

# ଅଭିନନ୍ଦନ

ନୂତନ ବର୍ଷ ଅଭିନନ୍ଦନ ହୃଦୟଭରା ଅଭିନନ୍ଦନ
ପ୍ରଥମ ଦିନରେ ଅନେକ ଯୋଜନା ଓ ବନ୍ଧୁମିଳନ
ଲେଖନୀ ମୂନରେ କାହାକୁ କିପରି ସଜାଇବା
ଲାଗେ ଅସମ୍ଭବ ହୁଏ ମନ ଆବା କାବା
କେହି ଚିନ୍ତା କରେ ଭେଟିବାକୁ ପ୍ରଥମେ ପ୍ରିୟାକୁ
କେହି ଗୁରୁଜନ ଅବା ସାଙ୍ଗ ସାଥୀମାନଙ୍କୁ
ନୂତନ ବର୍ଷ ସବୁ ବର୍ଷ ଆସେ
ଏବେ ବି ଆସିଛି କିନ୍ତୁ ଅନେକ ଯାତନା ନେଇ
ଗଣଧର୍ଷଣ ଲୁଟ୍ ମାର୍ ଗୁଳିକାଣ୍ଡ ପୁଣି ହତ୍ୟା ଆତ୍ମହତ୍ୟା
ଧୂଳିସାତ ସମସ୍ତ ଆଶା ଆକାଂକ୍ଷା ଭବିଷ୍ୟତ
ବୈଜ୍ଞାନିକ, ଶିକ୍ଷାବିତ୍, ରାଜନେତା, ସାହିତ୍ୟିକ
ଭାବନା ଅନେକ ଯୋଜନା ସତେ କଳିଯୁଗ ହେବ ଶେଷ ।
ନୂତନ ବର୍ଷ ତୁମେ ଅଭିନନ୍ଦନୀୟ
ପବିତ୍ର ଆଗମନେ ତବ ପାପ ହେଉ କ୍ଷୟ
ନୂତନ ଆଲୋକେ ଜଳିଯାଉ ସବୁ ହିଂସାତ୍ମକ କାର୍ଯ୍ୟ
ଶିକ୍ଷିତ, ଧାର୍ମିକ, ସତ୍ୟବ୍ରତ ହେଉ ଏ ସମାଜ
ପ୍ରତ୍ୟେକ ସନ୍ତାନ ହେଉ ସ୍ୱାଭିମାନର ପ୍ରତୀକ
ଭରିଯାଉ ସାରା ବିଶ୍ୱେ ଓଡିଶାର ଟେକ ।



# ବେଦନା ରାସ୍ତାର

ରାସ୍ତାର ବେଦନା ନୁହେଁ ତ ଅଜଣା
ସମାଜରେ ସବୁ ବର୍ଗେ ଅତି ପରିଚିତ
ରାଜରାସ୍ତା ପଡିଅଛି ଦାନ୍ତକୁ ନିକୁଟି
ଖଣ୍ଡିଆ ଖାବରା ଦେହସାରା
ସନ୍ତର୍ପଣେ ଯାତାୟାତ ଦିନରାତି
ତଥାପି କଟାହୁଏ ହାତ ଗୋଡ
ଫାଟେ ମୁଣ୍ଡ
ଲୋଟିଯାଏ ଜୀବନ ଅନେକ
ଗଣମାଧ୍ୟମ ପାଇଁ ଗରମ ଖବର
ପାଠକ ପାଇଁ
ବିତର୍କ ଓ ସମାଲୋଚନାର ଖୋରାକ
ପାନ ଓ ଚା' ଦୋକାନେ ଭିଡ ଜମେ
ଗରମାଗରମ ଆଲୋଚନା
ମଦ ପିଇ ମାତାଲ ଚାଳକ ଚଳାଉଛି ଗାଡି
ପ୍ରଶାସକ କହେ ଆଇନ ହୋଇଛି କଡା କଡି
ନିୟମ ଭାଙ୍ଗିଲେ ଛାଡ ପାଇବନି
ନିଶ୍ଚେ ଯିବ ମାମୁଁ ଘର
ଦୁର୍ଘଟଣା ଅଘଟଣ ନିତିଦିନ ବେଦନା ରାସ୍ତାର
ପୁଣି ରାସ୍ତାରୋକ, ଯାତ୍ରା ପଟୁଆର
ସମସ୍ତେ ଖାଲ ଢିପ ରାସ୍ତାର ଅତିଥି
ଅସହ୍ୟ ସହନ ଶକତି ।



# ପଲ୍ଲୀ ପ୍ରକୃତି

ବିଲୁଆ ନନାର ବାହାଘର ଆଜି
ବାଜୁଛି ତେଲିଙ୍ଗି ବାଜା
ରୋଷଣୀ କରୁଛି ଜୁଲୁଜୁଳା ପୋକ
ହେବ କ୍ଷୀରି ମାଛଭଜା

ବଗ ଚିଲ କାଉ ହଳଦୀ ବସନ୍ତ
ବର ଯାତ୍ରୀ ହୋଇଛନ୍ତି ।
ନିଜ ନିଜ ଗୁଣେ ବୋବାଳି କରନ୍ତି ।
ଆନନ୍ଦ ଭରେ ନାଚନ୍ତି ।

ଲାଗି ଅଛି ଝଡି ସାତ ଦିନ ହେଲା
ଗାଁ ଦାଣ୍ଡେ ପାଣି ଠିଆ
ମେଘ ଗରଜୁଛି ବିଜୁ ଚମକୁଛି
ବରଷେ କଳା ହାଣ୍ଡିଆ

ନଈ ଉଛୁଳୁଛି ଭଉଁରୀ ଖେଳୁଛି
ବହୁଅଛି ଖରେ ବାଆ
ନାହାଁନ୍ତି କେଉଁଠି କାଉକି କୋଇଲି
ଘରିଆଡ ନିଛାଟିଆ
କଙ୍କଡା ନାନୀଟି ହିଡତଳେ ଯାଏ
ଓଢଣାକୁ ଟାଣି ତାର
ବାଇଆ ଚଢେଇ ବସା ଦୋହଲୁଛି
ତାଳ ଗଛେ ତାର ଘର ।

ବରଷୁଛି ମେଘ ତୁହାଇ ତୁହାଇ
ଗରଜୁଛି ଘଡ ଘଡି
ଚଷୀ ଭାଇକରେ ହଳ ବେଉଷଣ
ମେଘକୁ ଖାତର ନାହିଁ
ଥରି ଉଠୁଅଛି ପାଣି ପବନରେ
ଦିହ ତାର ସାଇଁ ସାଇଁ
ଘର ବାରିଆଡେ ସାରୁଗଛ ମୂଳେ
ବେଙ୍ଗୁଲି ଛାଡୁଛି ରଡି
ବେଙ୍ଗ ରାଣୀ ବାହେ
ବେଙ୍ଗ ରାଜା ସଙ୍ଗେ ସାରୁ ପତର ନାଆ
ନାବକେଳି କରେ ପୋଖରୀ ମଝିରେ
କି ସୁନ୍ଦର ଦିଶେ ଆହା ॥

❑❑



# ଚିଠି

ଚିଠି ଦେଖିଥିଲି ପିଲା ବେଳେ ମୁହିଁ
ଯେବେ ପଢୁଥିଲି ସ୍କୁଲରେ
ବୋଉ କହୁଥିଲା ଚିଠିତ ଆସିବ
କାଉରାବି ଦେଲେ ଚ଼ାଳରେ
ହୃଦୟର କଥା ଚିଠି କହୁଥିଲା
ଏବେ ଦୂରଭାଷ ଯନ୍ତ୍ରରେ
ତଥାପି ଲେଖିଲି ଚିଠି ମୋ ପ୍ରିୟାକୁ
ଦେଖା ହେବା ପରେ ମନ୍ଦିରରେ
ଉତ୍ତର ଆସିଲା ମୋ ପ୍ରିୟା ପାଖରୁ
ହସୁଥିଲି ତାଙ୍କ ଭାଷାରେ
ଚକା ମୁହିଁ ତାଙ୍କ ଭଲ ଲାଗୁଥିଲା
ସିନ୍ଦୂର ନାଇଲେ ମଥାରେ
ଓଢଣୀ ଭିତରେ ଆଡ ଚ଼ାହାଁଣୀରେ
ଦୁଷ୍ଟାମୀର ଢେଉ ଆଖିରେ
ହୃଦୟ ଭିତରେ ପ୍ରିୟା ରହିଗଲେ
ଆଉ ସବୁ ଅଜାଣତରେ
ଚିଠି ଦେବି କହି ବିଦେଶକୁ ଗଲି
ପ୍ରିୟା ଛାଡି ଦେଇ ଘରେ

ପ୍ରିୟାର ମୁହଁଟି ମଳିନ ଦିଶିଲା
ଜହ୍ନ ଯେହ୍ନେ ଲୁଚେ ବାଦଲରେ
ଚିଠି ଏବେ କାଳେ ରାହା ପାଉ ନାହିଁ
ମୋବାଇଲ ବିଜ୍ଞାନ ଯୁଗରେ
ଡାକବାଲା କିନ୍ତୁ ଚିଠି ବାଣ୍ଟୁ ଅଛି
ଖରା ବର୍ଷା ଓ ଶୀତରେ ।





# କଳା

ଧନ୍ୟ କଳାକାର ଧନ୍ୟ ଗୋସେଇଁ
ସାତୋଟି ରଙ୍ଗରେ କଳା ଓ ଧଳା ରହିଲା ନାହିଁ
ଶାନ୍ତିର ପ୍ରତୀକ ଭାବେ ନେଲ ଧଳା ରଙ୍ଗକୁ
କଳାରଙ୍ଗେ ସଜାଇଲ ଜଗନ୍ନାଥଙ୍କୁ
କଳାରଙ୍ଗଟି ନୁହେଁ ନାକରା
ନନ୍ଦର ବଳା ସେ ଦୁଃଖ ପାସୋରା
ଭକ୍ତ ଭୁଲେ ଦୁଃଖ କାଳିଆ ମୁହଁକୁ ଚାହିଁ
କଳାତ ଆମର ସାଇଁ – ଦାରୁ ବ୍ରହ୍ମ ଗୋସାଇଁ ।।

କଳାକାୟା ବିସ୍ତାରିଛି ଦେଶେ
ନ ଥାଇ ସାତ ରଙ୍ଗରେ
ଜୀବନଟା ନୁହେଁ ମଧୁମୟ
କଳାଧନ ନ ଥିଲେ ପାଖରେ
ପାଠର କଳା ହାତର କଳା
କଳାଧନ ପୁଣି କଳା ଆଇନ
ଚରିତ୍ର କଳା ଧର୍ଷଣ କଳା
ରାତିର କଳା ଚୋରଙ୍କ କଳା
ଦେଖନ୍ତୁ ଶୁଣନ୍ତୁ କହିବା ବେଆଇନ ।।

କହିବା କଳା ଲେଖିବା କଳା
କୃପା ହେଲେ ଜଗନ୍ନାଥଙ୍କର
କୋଣାର୍କ କଳା ଓଡିଶୀ କଳା
ନେତାଙ୍କ କଳା ସମର କଳା ଛଉ
କଳାର ଚର୍ଚ୍ଚା ବହୁତ ହେଲାଣି
ଲାଜ ସରମ ଟିକେ ରହୁ ।।



# ଭୁଲ ରହିଲା କେଉଁଠି ?

ସ୍ରଷ୍ଟାଙ୍କ ସୃଷ୍ଟି ନାରୀ ଓ ପୁରୁଷ
ଦୁଇ ମହାନ ଶକ୍ତିର
ପରିପୂରକ ଅନୁପୂରକ
ସଂସାରେ ଦୁହେଁ ଦୁହିଁଙ୍କର ॥
ପୁରୁଷ ପାଖେ ନାରୀ ସୁନ୍ଦର
ଧନ୍ୟ ପରମେଶ୍ୱର
ନାରୀର ଅଭାବେ ପୁରୁଷ ଶୂନ୍ୟ
ଶକ୍ତି ହୁଏ ନାରଖାର ॥
ଲେଖନୀର ଉତ୍ସ ନାରୀର ପ୍ରେରଣା
କବି ଆଉ ଭାବୁକର
ନାରୀର ଉନ୍ନତି ପୁରୁଷର ଲକ୍ଷ୍ୟ
କର୍ମରେ ସଦା ତତ୍ପର ॥
ସ୍ୱାମୀ ଥିଲେ ପାଶେ ନାରୀ ଶକ୍ତିମୟୀ
ହେଉ ପଙ୍ଗୁ ଦୀନ ହୀନ
ପରମେଶ୍ୱରଙ୍କ ସୃଷ୍ଟିରେ ଏଇତ
ଶ୍ରେଷ୍ଠ ମାନ ସନମାନ ॥
ପୁରୁଷ ନାରୀର ମନ ମନାନ୍ତର
ଯାହା କ୍ଷଣିକ ମାତର
ପୁରୁଷ ବିରୁଦ୍ଧା ଚରଣେ ଆଜି
କାହିଁକି ନାରୀ ଅଗ୍ରସର ?
ଭୁଲ କେଉଁଠି ରହିଲା କହିବେ
ବୁଦ୍ଧିଜିବୀ ପଣ୍ଡିତ ପ୍ରବର ॥



# ଦୋ ଛକି

ପ୍ରକୃତି ବକ୍ଷରେ ଆକାଶ ପଥରେ
ଚନ୍ଦ୍ର ସୂର୍ଯ୍ୟ ଆତଯାତ
ବଦଳୁନି କିଛି ଯୁଗର ପ୍ରଭାବେ
ନିୟମ ଅନୁବନ୍ଧିତ
ସମାଜ ସଂସ୍କୃତି ଶିକ୍ଷାର ପ୍ରଗତି
ଚାଲିଛି ଚାଲିବ ସଦା
ଉନ୍ନତିର ନାମେ ଅଧୁନିକାବାଦ
ନମ୍ରତା ସଂସ୍କୃତି ବିଦା
ମନ ମଉଜରେ ଚାଲୁଥିଲା ସବୁ
ସ୍ନେହ ପ୍ରୀତିର ସମ୍ଭାର
ପୁରୁଷ ପୁରୁଷ ଭାବ ରହୁଥିଲା
ଶାନ୍ତି ଥିଲା ସମାଜର
ଉଭାନ ହୋଇଛି ମହାନ୍ ଭାବନା
ଦେଶ ଓ ଜାତି ଭିତରେ
କି ଆଦର୍ଶ ନେଇ ଜୀବନ କାଟିବା
ରହିଅଛୁ ଦୋ ଛକିରେ ।

❑❑

# ଏ ଭାଇ ଜେରା ଦେଖକେ

ତିନୋଟି ଅକ୍ଷରରେ ଲେଖା ଟ୍ରାଫିକ୍
ନିୟମ ନମାନିଲେ ଜୀବନ ସାଙ୍ଘାତିକ
ତିନି ପ୍ରକାରର ଟ୍ରାଫିକ୍ ଚିହ୍ନ
ନିରାପତ୍ତା, ନିର୍ଦ୍ଦେଶ, ସୂଚନା ଘନଘନ ।

ମନ ଉଚ୍ଛନ୍ନ କରି ଚଳାଇଲେ ଗାଡ଼ି
ଯନ୍ତ୍ରଣା ପାଇବ ରାସ୍ତାରେ ପଡି
ତିନି ଗାର କାଟି ଲକ୍ଷ୍ମଣ କରିଥିଲେ ବାରଣ
ମାନିଲେ ନି ସୀତା ରାବଣ କଲା ହରଣ ।

ଟ୍ରାଫିକରେ ଅଛି ତିନୋଟି ଉପାଦାନ
ଇଞ୍ଜିନିୟରିଂ, ପଠନ ଓ ପ୍ରବର୍ତ୍ତନ
ଗାଡିର କାରିଗରୀ, ରାସ୍ତା ଗଠନ ସଙ୍ଗେ ସଚେତନ
ଦୁର୍ଘଟଣା ନିରାକରଣ ଅଟେ ସର୍ବୋତ୍ତମ ।

ରାସ୍ତା ବାମ ପାଖେ ଯିବା ନିୟମ
ଭାରତ ଭୂଖଣ୍ଡେ ସମସ୍ତେ ଜାଣ
ଆଗ ଗାଡିକୁ ଅତିକ୍ରମ ଭାବିଲେ ଥରେ
କଟାଇ ଚାଲିବ ଡାହାଣ ପାଖରେ ।

ଅତିକ୍ଳାନ୍ତ ଥିଲେ ଦେହ ଓ ମନ
ଗାଡିରୁ ଓହ୍ଲାଇ କର ବିଶ୍ରାମ
ପ୍ରତିହତ ପାଇଁ ଆରକ୍ଷୀ ମୁତୟନ
ନିର୍ଦ୍ଦେଶକୁ ତାଙ୍କ ଦିଅ ସମ୍ମାନ ।

ସୁରକ୍ଷିତ ହେବ ନିଜ ଜୀବନ
"ଏ ଭାଇ ଜେରା ଦେଖକେ ଚଲୋ"
"ମେରା ନାମ ଜୋକର" ଫିଲ୍ମି ନାମ ।

ରାସ୍ତାରେ ଯାତାୟାତ ଭାରି ଡେଞ୍ଜର
ଆଘାତ ଲାଗିବ ପ୍ରାଣ ଯିବ ହେଲେ ଅସ୍ଥିର
ରସ୍ତା ପାରିହେବାର ନିୟମ ଜାଣ
ଡାହାଣ ବାମ ପୁଣି ଡାହାଣ ।





# ତାତି ଏ ପ୍ରେମର

ଓଃ ବାପରେ ବାପ, କି ତାତି
ସୂର୍ଯ୍ୟ କିରଣଠୁ ବଳି
ଅଗ୍ନିଠାରୁ ବି ଅଧିକ
ଯୌବନର ପ୍ରେମ ତାତି
ହେଉ ପଛେ ଅସହ୍ୟ ଓ ବିଷମୟ ଅତି । (୧)
ଜାତି ବର୍ଣ୍ଣ ନିର୍ବିଶେଷ
ଅନୀତିର ଅନ୍ତର୍ଗତ
ତୀଳାର୍ଦ୍ଧ ନଥାଏ ଭିତ୍ତି
ଖୋଜି ହୁଏ ପୌର୍ଣ୍ଣମାସ ତିଥି
ମଧୁମୟ ଗତି । (୨)
ପ୍ରେମ ପାଇଁ ଲୋଡ଼ା ନୁହେଁ ପାଠ
ନଥାଏ ସମୟ ଜ୍ଞାନ
ଅବ୍ୟବସ୍ଥିତର ମନ
ହୃଦ ଭାବମୟ
ଆତୁର ଚାହାଣୀ ଏବଂ ସୁଆଦିଆ କଥା
କେବେ କେବେ ଦିଏ ବ୍ୟଥା
ଏ ନୁହେଁ ଅନ୍ୟଥା । (୩)
ଅତ୍ୟନ୍ତ ମଧୁମୟ ଏସମ୍ପର୍କ ପ୍ରେମର
ପଶୁପକ୍ଷୀ, ତରୁଲତା, ଫୁଲମଧ୍ୟେ -
ଘଟେ ନିରନ୍ତର ନାହିଁ ପଟାନ୍ତର
ନିୟମ ପ୍ରକୃତିର ତାତି ଏ ପ୍ରେମର । (୪)



# ପରିବର୍ତ୍ତନେ ଋତୁରାଜ

ଛଅଋତୁ ମଧ୍ୟେ ଋତୁରାଜ ବସନ୍ତ

ପ୍ରକୃତି ପରିବର୍ତ୍ତନେ ପ୍ରତିଫଳିତ

ଗ୍ରୀଷମେ ଧରଣୀ ଉତପ୍ତ

ଗରମ ପୋଷାକ ଯେବେ ଶୀତ ଅନୁଭୂତ

ବସୁଧା ଉବୁଟୁବୁ ବର୍ଷାଋତୁକାଳେ

ଶରତେ କାଶତଣ୍ଡୀ ଚତୁଃର୍ଦ୍ଦିଗେ ଖେଳେ

ବସନ୍ତ ପବନେ ଦେହ ଉଲ୍ଲସିତ

ପଲାଶ ଫୁଲରେ ପ୍ରକୃତି ସଜ୍ଜିତ

କୁହୁକୁହୁ ତାନ ପତ୍ର ଗହଳରେ

ଆମ୍ବ କଷି ଝୁଲେ ଡେଙ୍ଗ ବିମାନରେ

ଚଇତି ଘୋଡ଼ା ଆସଇ ଲଉଡି ଖେଳ

ରାଧାକୃଷ୍ଣଙ୍କୁ ଧରି ଅବିର ଖେଳ

ବସନ୍ତ ବିଦାୟ ଦିଏ ଗୋଟିଏ ବର୍ଷକୁ

ହୋଲିରଙ୍ଗ ଧୋଇଦିଏ ପୂର୍ବ ମନାନ୍ତରକୁ

◘◘



# କୁକୁର

କୁକୁର ଜାତି ଭାରି ବିଶ୍ୱାସୀ
ତୁ ତୁ ଡାକରେ ପାଖକୁ ଆସି
ଲାଞ୍ଜ ହଲାଏ ମନରେ ଖୁସି
ତାଳି ମାରନ୍ତି ପିଲାଏ ହସି ॥

ଦେଶୀଆଙ୍କ ଠାରୁ ବିଦେଶୀ ଭଲ
ବାବୁଆଣୀଙ୍କ ଗେହ୍ଲା ବସର
ଭିତରେ ଥାଏ ସୋଫାରେ ଶୁଏ
ଗାଡ଼ିରେ ବସି ହେଂ ବଜାର ଯାଏ ॥



ବିଦେଶୀଆ ଜାତି ଭଲି ଭଲିକା
ଗେଡ଼ା ଡେଙ୍ଗା କିଏ ଲାଙ୍ଗୁଡ଼ କଟା
ଘର ଜଗି ବସି ଚୋର ଧରନ୍ତି
ମାଉଁସ ଭାତ ନିତି ଖାଆନ୍ତି ॥

କିଏ ଆରକ୍ଷୀର ସାଥୀରେ ଥାଏ
ବୋମା ଓ ଚୋରକୁ ଖୋଜି ଦେଖାଏ
ନିରାଶ ବେଳରେ ସାହାରା ଦିଏ
ତା ଧରମ କେବେ ଭୁଲେନି ସିଏ ॥



# ଆମେ ସବୁରି ପାଇଁ

ବିଜ୍ଞାନ ବଳେ ମଣିଷ ଜାତି
ଅରଜେ ଧନ ଯଶ କୀରତି
ବିଜ୍ଞାନ ଆଜି ଆମର ଭାଇ
ଲାଗିଛି ଆମ ବିକାଶ ପାଇଁ
ତା ପାଇଁ ଆମ ବେଶି ବଢ଼େଇ
ମହାକାଶରେ କରୁ ଲଢ଼େଇ ॥

ତା ସହଯୋଗ ସାଥିରେ ନେଇ
କ୍ଷେତବାଡ଼ିର ଶୋଭା ବଢ଼େଇ
ଦେଶର ମାନ ନେବା ଆଗେଇ
ବଇର ଭାବ ଦେବା ଦୂରେଇ ॥

ସବୁରି ପାଇଁ କାମ କରିବା
ସବୁରି ହିତ ମନେ ଭାବିବା
ଆମେ କରିଲେ ପରର ହିତ
ସଭିଏଁ ହେବେ ଆମର ମିତ ॥



# ଗଣତନ୍ତ୍ର

ସେମାନେ କହୁଥିଲେ
ଭାରତବାସୀ ଅତି ବିଶ୍ୱାସୀ
ତେଣୁ ଦେଉଥିଲେ ସାବାସୀ
ଧନରତ୍ନ ସବୁ ଲୁଟ କରୁଥିଲେ
ଦରିଆ ପାରିରୁ ଆସି
ନିରୀହ ଜନତା ଶିକ୍ଷାରେ ଅଭାବେ
ବୁଝିପାରୁ ନ ଥିଲେ କିଛି
ବ୍ୟଥିତ କରିଲା ଜନତାର ଦୁଃଖ
ବାପୁଙ୍କ ହୃଦୟେ ପଶି
ଜ୍ଞାନ ଅରଟକୁ ଚଳାଇଲେ ଦେଶେ
କରି ଦାଣ୍ଡୀ ପଦଯାତ୍ରା
ବାପୁଙ୍କ ଯାତ୍ରାରେ ମିଶିଲେ ସମସ୍ତେ
ହେଲେ ଯେବେ ସଚେତନ
ଘୂର୍ଣ୍ଣିବାତ୍ୟା ପରି ଭ୍ରମିଲା ମୁଣ୍ଡ
ବିଶୃଙ୍ଖଳିତ ହେଲା ଶାସନ
ନିୟନ୍ତ୍ରଣ ପାଇଁ କଠୋର ହେଲେ
ଗରଜିଲା ତୋପ କମାଣ
ଅସୁମାରୀ ପ୍ରଜା ଧରାଶାୟୀ ହେଲେ
ତଥାପି ଜନତା ହେଲେନି ଭୀତ

ବିଦ୍ରୋହର ବହ୍ନି ତେଜିୟାନ ହେଲା
ବାପୁ ହେଲେ ଗଣତନ୍ତ୍ରନାୟକ
ସର୍ଦ୍ଦାର ପଟେଲ ଜବାହରଲାଲ
ସାଥୀ ଦେଲେ ରଖିବାକୁ 'ମା'ର ମାନ
ଫିରିଙ୍ଗି ଶାସକ ନିରୁପାୟ ହୋଇ
ଦେଶକୁ କରିଦେଲା ସ୍ୱାଧୀନ
ସ୍ୱାଧୀନତା ପରେ ମାନସ ମନ୍ଥନ
ଭାରତ କରିବେ ମହାନ
ଭାରତ ବର୍ଷକୁ ଗଣତନ୍ତ୍ର କଲେ
କଲେ ପୁଣି ସାଧାରଣତନ୍ତ୍ର
ଶାନ୍ତି ଅହିଂସା ସରଳ ଜୀବନ
ପ୍ରମାଣିତ କରେ ଭାରତ କେତେ ମହାନ
ଦେଶ ଚାଲିଅଛି ସେହି ନିୟମରେ ଚାଲୁଥିବ ପ୍ରତିଦିନ
ନିମିତ୍ତ ମନୁଷ୍ୟ କରିଯାଉ ସିଏ
ଯାହା ଅଟେ ତାର କର୍ମ
ଗୀତା ଭାଗବତ ବିବେକ ତାହାର
ଆଦର୍ଶ ଅଟେ ରାମାୟଣ

❑❑

# ଆନନ୍ଦ ଅପାର

ନଳିନୀ ମଧ୍ୟରେ ନୀଳୋତ୍ପଳ ସୁନ୍ଦର
ନୀଳଗିରିରେ ନୀଳ ଗାଈ ସୁନ୍ଦର
ନୀଳ କନ୍ଦରରେ ଜଗନ୍ନାଥ ସୁନ୍ଦର
ମୟୂରର ନୀଳକଣ୍ଠ ମନୋହର
ପ୍ରେମିକାର ଗୋଲାପି ଅଧର ସୁନ୍ଦର
ଫୁଲ ପ୍ରଜାତିରେ ଗୋଲାପ ସୁନ୍ଦର
କାକଳି ରାବେ କୋଇଲି କଣ୍ଠ ମଧୁର
ସରଗ ପୁରେ ନୀଳକଣ୍ଠ ମହେଶ୍ୱର
ସଙ୍ଗୀତରେ ରାଗିଣୀ ଆନନ୍ଦ ଅପାର
ଅବକାଶ କାହିଁ ସୁନ୍ଦରେ ତୃପ୍ତିର





# ଗର୍ଜନ

ବାଘସିଂହ ଗରଜନ ଜଙ୍ଗଲରେ
ଲହଡ଼ି ଗରଜନ ଦରିଆରେ
ତୋପ କମାଣ ଗରଜନ ସୀମାରେ
ନିତି ଦିନ କଥା ଏ ଧରା ବକ୍ଷରେ ॥

ଦେଶ ଚାହେଁ ଶାନ୍ତି, ଧର୍ମ କହେ ଶାନ୍ତି
ଜୀବଜନ୍ତୁ ଜଙ୍ଗଲରେ ଖୋଜୁଥାଏ ଶାନ୍ତି
ଯାନ୍ତ୍ରିକ ମାନବ ଦିଏ ଯନ୍ତ୍ରଣା
ନିଘଞ୍ଚ ଜଙ୍ଗଲ ଆଦି ଶୁଷ୍କ ମରୁଭୂମୀ
ଶାନ୍ତି ନିଖୋଜ ଆଜି ଗରଜନରେ
ପରିବର୍ତ୍ତନ ବ୍ୟତିକ୍ରମ ସମାଜରେ ॥

ସର୍ବେ ଭବନ୍ତୁ ସୁଖିନଃ ଖାଲି ଭାଷଣରେ
ହତ୍ୟା ଲୁଣ୍ଠନ ବଳାତ୍କାର ଚାଲେ ନିର୍ବିକାରେ
ପଶୁବୁଦ୍ଧି ରାଜ ମଣିଷ ଭିତରେ
ଧର୍ମ ଯାଇଛି ହଜି ଗର୍ଜନ ଭିତରେ ॥

□□

# ପ୍ରେମ ପ୍ରେମ ପ୍ରେମ

ପ୍ରେମ ପ୍ରେମ ପ୍ରେମ
ଶରୀରେ ରୋମାଞ୍ଚ ମନ ଉଲ୍ଲସିତ
ଗଗନେ ପବନେ ଭାବନା ଦୋଳାୟିତ
ବର୍ଣ୍ଣିବାକୁ ଧୃଷ୍ଟତା ପ୍ରକାରଭେଦ
ଅଭିଧାନେ ଊଣା ହୋଇଥାଏ ଶବ୍ଦ
ପ୍ରେମ ରଜ୍ଜୁରେ ବାନ୍ଧି ପଞ୍ଚ ପାଣ୍ଡବଙ୍କୁ
କୁରୁବଂଶ ନାଶ ଲକ୍ଷ୍ୟ ପ୍ରତିଷ୍ଠା ଧର୍ମକୁ ॥

ପୃଥିବୀ ପୃଷ୍ଠରେ ପ୍ରକୃତି କକ୍ଷରେ
ପ୍ରେମ ପ୍ରସ୍ଫୁଟିତ ତରୁଲତାରେ ଫୁଲ ଫଳରେ
କାଶତଣ୍ଡୀ ଫୁଲ ଶରତଋତୁରେ
ପଳାଶ କୃଷ୍ଣଚୂଡା ନିଦାଘ ଗ୍ରୀଷ୍ମରେ
ଫୁଲର ସମ୍ଭାର ଶୀତଋତୁରେ
ପ୍ରେମବୋହି ଯାଏ ଏ ଧରାବକ୍ଷରେ ॥

ବାଲ୍ୟପ୍ରେମ ଧୂଳିଘର
ସବୁରି ଆଖିରେବନ୍ଧୁ ପରିବାରେ
ବାଲ୍ୟଲୀଳା ଆରମ୍ଭିଲେ ମାଆକୋଳେ ଗାଁ ଦାଣ୍ଡରେ
କୃଷ୍ଣଙ୍କ ପ୍ରେମ ଗୋପୀମେଳରେ
ନନ୍ଦରାଜା ଘରେ ପୁଣି ଗୋପ ନଗରୀରେ
ବନ୍ଧା ଥିଲା ସବୁପ୍ରେମର ରଜ୍ଜୁରେ ॥

ଯୁବାପ୍ରେମବନ୍ଧୁମେଳେ ନିଜ ପରିଧିରେ
କ୍ଷଣସ୍ଥାୟୀ କାମନା ବିଳାସରେ
ପରିଣତ ବୟସେ ପ୍ରେମ ଶ୍ରୀରଙ୍ଗା ଚରଣେ
ବ୍ୟାପ୍ତ ଯାହା ଜୀବଜନ୍ତୁ ବନ୍ଧୁ ପରିଜନେ
ଜନ୍ମନେବା ପରେ ପ୍ରେମର ଉପସ୍ଥିତି ସବୁ ସମୟରେ
ହରେ କୃଷ୍ଣ ହରେରାମ
ଲୀଳାମୟ ସଂସାର ବକ୍ଷରେ ।।







# ଶରତ ପ୍ରେମ

ଶରତ ଋତୁରେ କାଶତଣ୍ଡି ଫୁଲ
ପ୍ରକୃତି ସୌନ୍ଦର୍ଯ୍ୟ ମୋହିଲା
ବାଇଶି ବସନ୍ତ ଆସିବା ପୂର୍ବରୁ
ଏକୋଇଶି ରେ ପ୍ରେମ ଘାଇଲା
ସରଳ ସ୍ୱଭାବ ଲାଜକୁଳି ସିଏ
ସେ ମୋର ସୁନାହରିଣୀ
ବସନ୍ତରେ ନୁହେଁ ଶରତରେ ଭେଟ
ସେ ଥିଲା ମୋର ସଙ୍ଗିନୀ ॥
ଜୋଛନା ରାତିର ଚନ୍ଦ୍ର ମଲ୍ଲୀସିଏ
ପ୍ରେମ ସାଗରର ରାଗିଣୀ
ଚକା ମୁହଁଟାର କଇଁ ଫୁଲ ଗୋରା
ଅଧରଟି ନାଲି ରଙ୍ଗିନି
ହୃଦୟର କଥା କହେ ସେ ଆଖିରେ
ନୁହେଁ ସିଏ ଚୁଲୁବୁଲି ॥
ସବୁଜ ମଣ୍ଡିତ ଧରା ବକ୍ଷେ ଯେବେ
କାଶତଣ୍ଡି ଫୁଲ ହସେ
ମନ ମାରି ଦେଇ ଲାଜକୁଳି ମୋର
ନିଭୃତ କକ୍ଷରେ ବସେ

ମନର ବେଦନା ପ୍ରେମର ଯନ୍ତ୍ରଣା
ସତେକି ପାଲଟେ ନଈ
ଅଙ୍କା ବଙ୍କା ହୋଇ ଧାଇଁ ଯାଏ ସିଏ
ମୋ ଦେହେ ଫୁଟାଇ ଖଇ ।
ପ୍ରେମ ସାଗରରେ ଭାସି ଯାଉ ଯାଉ
ସାହାର ମିଳିଲା ଆସି
ସହାସ୍ୟ ବଦନେ କୋମଳ ବଚନେ
ଖୁସିରେ ଗଲି ମୁଁ ଭାସି ।





# ପ୍ରକାଶିକାଙ୍କ ଲେଖନୀରୁ...



କବି ଶ୍ରୀ ନରେନ୍ଦ୍ର ନାଥ ଦାଶଙ୍କର ଜନ୍ମ ଯାଜପୁର ଜିଲ୍ଲା ବଡ଼ଚଣା ଥାନା ଅଧିନସ୍ଥ କଡ଼େଇ ଶାସନ ଗ୍ରାମରେ । ପିତା ସ୍ୱର୍ଗତ ବଂଶୀଧର ଦାଶ ଓ ମାତା ସ୍ୱର୍ଗତ ସୀତା ଦେବୀ । କବି ବର୍ତ୍ତମାନ ପୁରୀ ସହର ସ୍ଥିତ ଦଣ୍ଡତୋଟାର ବାସିନ୍ଦା । ମହାବିନାୟକ ବିଦ୍ୟାଳୟ ବଡ଼ଚଣା ଓ ରେଭେନ୍ସା କଲେଜ କଟକ ତାଙ୍କର ଶିକ୍ଷାକ୍ଷେତ୍ର । ଓଡ଼ିଶା ଆରକ୍ଷୀ ବିଭାଗରେ କର୍ମମୟ ଜୀବନ ସମାପ୍ତ କରି ଅବସରକାଳୀନ ସମୟ ପୁଅ ବୋହୂଙ୍କ ପାଖରେ ଭୁବନେଶ୍ୱରରେ ଅତିବାହିତ କରୁଛନ୍ତି ।

କବିଙ୍କ ଜନ୍ମ ଏକ ସାହିତ୍ୟିକ ପରିବାରରେ । କବି ଶ୍ରୀ ଦାଶ ଚାକିରୀର ଶେଷ ଭାଗରୁ ସାହିତ୍ୟ କ୍ଷେତ୍ରରେ ପ୍ରବେଶ କରିଛନ୍ତି । ଏଥିରେ ତାଙ୍କୁ ଦିଗ୍‌ଦର୍ଶନ ଓ ସହାୟତା ପ୍ରଦାନ କରିଥିଲେ ବ୍ୟଙ୍ଗ କବି "ଛୁଆ ବାପା" ଶ୍ରୀ ଭିକାରୀ ଚରଣ ରଥ ।

କବି ଜଣେ ଟ୍ରାଫିକ ବିଶାରଦ ହୋଇଥିବାରୁ ଓଡ଼ିଆ ଭାଷାରେ ପ୍ରଥମ କରି ଏକ ଟ୍ରାଫିକ ପୁସ୍ତକ "ଟ୍ରାଫିକ ପ୍ରଜ୍ଞାନ" ୨୦୦୩ ମସିହାରେ ଓ ଅନ୍ୟ ଏକ ଟ୍ରାଫିକ ପୁସ୍ତକ "ଜଣା ଅଜଣା ଟ୍ରାଫିକ" ୨୦୦୭ ମସିହାରେ ପ୍ରକାଶ କରିଛନ୍ତି । ଟ୍ରାଫିକ ସଚେତନତା ପାଇଁ ତାଙ୍କର ଅନେକ ଲେଖା ସମ୍ବାଦପତ୍ର ଓ ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଛି । ଏହି "ଭାବଗୁଚ୍ଛ" ପୁସ୍ତକରେ କିଛି ଟ୍ରାଫିକ୍ କବିତା ମଧ୍ୟ ସ୍ଥାନ ପାଇଛି । ଟ୍ରାଫିକ ସଚେତନତା କ୍ଷେତ୍ରରେ ବହୁ ସମୟ ଦେବା ସତ୍ତ୍ୱେ ସାହିତ୍ୟ ପ୍ରତି ତାଙ୍କର ଯଥେଷ୍ଟ ଅନୁରାଗ ମଧ୍ୟ ରହିଅଛି । କବି ନିଜକୁ ସାହିତ୍ୟ ଅନୁଷ୍ଠାନ "ସରସ ସାହିତ୍ୟ ସମିତି" କଟକ, "ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପରିଷଦ" ପୁରୀ, "ଶ୍ୱେତ ସଙ୍କେତ" ଓ "ଭାଷା ସଂସ୍କୃତି ସମାଜ" ଭୁବନେଶ୍ୱର ସହ ମଧ୍ୟ ଜଡ଼ିତ ଅଛନ୍ତି ।

କବି ନିଜର କର୍ମକ୍ଷେତ୍ରରେ ଯଥେଷ୍ଟ ପାରିଦର୍ଶିତା ଅର୍ଜନ କରିବା ବ୍ୟତୀତ ସମାଜରେ ଜଣେ ମଣିଷର ଗୁଣ ନେଇ କେତେକଙ୍କ ପରିବାରକୁ ସମାଜରେ ମଣିଷ ଭାବରେ ଚଳିବାର ବ୍ୟବସ୍ଥା ମଧ୍ୟ କରାଇ ଦେଇଛନ୍ତି । ସେହି ମାନଙ୍କର ସ୍ନେହ, ସଦିଚ୍ଛାକୁ କବି ଆଜି ସାହିତ୍ୟ ଜଗତରେ ପାଦ ଦେଇ ଅଗ୍ରସର ହେଉଛନ୍ତି ।

ଭଗବାନ ତାଙ୍କୁ ଦିର୍ଘାୟୁ ତଥା ନିରୋଗ ରଖନ୍ତୁ । ପରିବାରର ଆଦର୍ଶ ହୋଇ ରହିଆଆନ୍ତୁ ।

ଦେବସ୍ମିତା ମିଶ୍ର
ଆଇନ ଜୀବି